## ଲେଖକଙ୍କ ସାହିତ୍ୟ କୃତି

- ଭ୍ରମଣ କାହାଣୀ
  ମୁକ୍ତିତୀର୍ଥ ଆଣ୍ଡାମାନ
- ଅପରାଧ କାହାଣୀ
  କଳା ପୃଥିବୀର କଥା
- ସାମାଜିକ
  ଇନ୍ଦ୍ରଙ୍କ ମର୍ତ୍ତ୍ୟ ଗସ୍ତ
- ଗଳ୍ପଗୁଚ୍ଛ
  ଅର୍ନ୍ତଦାହ, ମାଟିର ମହକ
- ଆତ୍ମଜୀବନୀ
  ମୋ ପୋଲିସ୍ ଜୀବନ
- ଉପନ୍ୟାସିକା
  ତ୍ରିଧାରା
- ଉପନ୍ୟାସ
  ପରଦେଶୀ, କାଇଁଚର ସ୍ୱପ୍ନ, ଶେଷ ଗସ୍ତ
- ଅନୁବାଦ
  ଜଗନ୍ନାଥଧାମକୁ ଯାତ୍ରା
- ଇଂରାଜୀ ଗଳ୍ପ ସଂଚୟନ
  ରିମାଇସାନ୍ସ ଅଫ୍ ଏ କପ୍
- ଶିଶୁ ସାହିତ୍ୟ
  ପିଲାଙ୍କ ଶିକାର ଗପ, ଯନ୍ତାରେ ବାଘୁଣୀ,
  କଣା ହାତୀ, ପୋଲିସ୍ କୁକୁର ଡଲି,
  ଗପ ହେଲେ ବି ସତ, ଜଗା ବଳିଆ,
  ଛୋଟ ସାହେବ, ପିଲାଙ୍କ ଯାତାୟତ ଶିକ୍ଷା,
  ପିଲାଙ୍କ ଜାଣିବା କେତେକ ଆଇନ,
  ଅଜାଙ୍କ ଶିକାର ଗପ
- କ୍ଷୁଦ୍ର ନାଟିକା
  ଚିଲିକା

# ସ୍ମୃତିରେ ମହାବାତ୍ୟା

(୧୯୯୯ ଅକ୍ଟୋବର ମହାବାତ୍ୟା)


## ବଟକୃଷ୍ଣ ତ୍ରୀପାଠୀ



ପ୍ରକାଶକ




ବୁକ୍ସ ହବ୍

ବରମୁଣ୍ଡା, ଭୁବନେଶ୍ୱର

ସ୍ମୃତିରେ ମହାବାତ୍ୟା
(୧୯୯୯ ଅକ୍ଟୋବର ମହାବାତ୍ୟା)
ଲେଖକ : ବଟକୃଷ୍ଣ ତ୍ରୀପାଠୀ
ପ୍ରକାଶକ : ବୁକ୍ସ ହବ୍
ବରମୁଣ୍ଡା, ଭୁବନେଶ୍ୱର
ଦୂରଭାଷ : ୯୯୩୮୪୮୪୭୧୫
ଅକ୍ଷର ସଜ୍ଜା ଓ ମୁଦ୍ରଣ:
ବୁକ୍ସ ହବ୍, ବରମୁଣ୍ଡା, ଭୁବନେଶ୍ୱର
ଦ୍ୱିତୀୟ ପ୍ରକାଶନ : ୨୦୧୮
ମୂଲ୍ୟ: ୧୪୦ ଟଙ୍କା ମାତ୍ର




SMRUTIRE MAHABATYA
Writer: **Batakrushna Tripathy**
Publisher: **BOOKS HUB**
Baramunda, Bhubaneswar
Mob.: **9938484715**
2nd Edition: **2018**
DTP & Printed at:

Price: **Rs. 140/- only**

# ପୁସ୍ତକ ସଂପର୍କରେ ପଦେ...

୧୯୯୯ ମସିହା ଅକ୍ଟୋବର ୨୮ ଏବଂ ୨୯ ତାରିଖ ଦୁଇଦିନ ଧରି ଓଡ଼ିଶାର ଉପକୂଳ ଜିଲ୍ଲା ସହ ଅନ୍ୟ କେତେକ ଜିଲ୍ଲାରେ ମହାବାତ୍ୟା ତାଣ୍ଡବ ସୃଷ୍ଟି କରିଥିଲା। ପ୍ରବଳ ବର୍ଷା ସାଙ୍ଗକୁ ୩୦୦ରୁ ଊର୍ଦ୍ଧ୍ୱ କିଲୋମିଟର ବେଗରେ ପବନ, ସାମୁଦ୍ରିକ ଝଡ଼, ଓଡ଼ିଶାରେ ଯେଉଁ ଧନଜୀବନର କ୍ଷତି ଘଟାଇଥିଲା, ତାହା ଥିଲା ଶତାବ୍ଦୀର ସବୁଠାରୁ ବଡ଼ ଦୁଃଖଦପୂର୍ଣ୍ଣ ପ୍ରଳୟଙ୍କରୀ ଘଟଣା। କୁହାଯାଏ, ୧୦୦ ବର୍ଷ ମଧ୍ୟରେ ଓଡ଼ିଶାରେ ଏପରି ମହାବାତ୍ୟା ଦେଖାଯାଇ ନ ଥିଲା। ସାମୁଦ୍ରିକ ଝଡ଼ରେ ଜଗତସିଂହପୁର ଜିଲ୍ଲା ଏରସମା ଥାନା ଅଞ୍ଚଳର ପ୍ରାୟ ୮ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ମୃତ୍ୟୁବରଣ କରିଥିଲେ। ଝଡ଼ର ପ୍ରକୋପ ଯୋଗୁ ପ୍ରାୟ ୧୫ ଫୁଟ ଉଚ୍ଚ ସମୁଦ୍ର ଲହଡ଼ିରେ ଯେଉଁମାନେ ସମୁଦ୍ର ଭିତରକୁ ଚାଲିଯାଇ ମୃତ୍ୟୁବରଣ କରିଥିଲେ, ସେମାନଙ୍କର ଶବ ମଧ୍ୟ ବହୁ କ୍ଷେତ୍ରରେ ମିଳି ନ ଥିଲା। ମହାବାତ୍ୟାରେ ଓଡ଼ିଶାର ପ୍ରାୟ ୧୫ ହଜାରରୁ ଊର୍ଦ୍ଧ୍ୱ (ସରକାରୀ ଭାବେ) ମୃତ୍ୟୁବରଣ କରିଥିଲେ, ଲକ୍ଷାଧିକ ବାସଗୃହ ସମ୍ପୂର୍ଣ୍ଣ ଭାବେ ମାଟିରେ ମିଶିଯାଇଥିଲା, ଏକ କୋଟିରୁ ଅଧିକ ବୃକ୍ଷ ଉପୁଡ଼ି ପଡ଼ିଥିଲା, ଏବଂ ମାଇଲ୍ ମାଇଲ୍ ଧରି ରାସ୍ତାଘାଟ ଧୋଇଯାଇଥିଲା। ଦୀର୍ଘବର୍ଷ ଧରି ମହାବାତ୍ୟାର କ୍ଷତିକୁ କ୍ଷତିଗ୍ରସ୍ତ ପରିବାର ଭରଣପୂରଣ କରିପାରି ନ ଥିଲେ।

ସେଇବର୍ଷ ମୁଁ କଟକ ସଦର ମହକୁମାରେ ମାନବାଧିକାର ସୁରକ୍ଷା ସେଲ୍‌ର ଆଇଜି ଥିଲି ଏବଂ ପୁଲିସ ମହାନିର୍ଦ୍ଦେଶକଙ୍କ, ନିର୍ଦ୍ଦେଶରେ କଟକର ଓଏମ୍‌ପି ଛକ ଠାରୁ ଜଗତସିଂହପୁର ସଦର ମହକୁମା ଏବଂ ପାରାଦ୍ୱିପ ଠାରୁ ଜଗତସିଂହପୁର ଭାୟା କୁଜଙ୍ଗ ଦେଇ, ରାସ୍ତା ଉପରେ ପଡ଼ିଥିବା ହଜାର ହଜାର ଗଛ ସଫା କରିବା ସଂଗେ ବହୁଳ ଭାବେ କ୍ଷତିଗ୍ରସ୍ତ ଏରସମା ଅଞ୍ଚଳକୁ ଯାଇଥିଲି। ଜଗତସିଂହପୁର ଏବଂ ପାରାଦ୍ୱିପ ଠାରେ ପଦସ୍ଥ ଅଧିକାରୀ ଭାବେ (ଉଭୟ ପୁଲିସ ଓ ରାଜସ୍ୱ) ପହଞ୍ଚିବାରେ ମୁଁ ଥିଲି ପ୍ରଥମ ଅଧିକାରୀ। ଜଗତସିଂହପୁର

ସଦର ମହକୁମାରେ ଆଇନଶୃଙ୍ଖଳା, ଉଦ୍ଧାର ଏବଂ ରିଲିଫ କାର୍ଯ୍ୟ ଏବଂ ଗ୍ରାମାଞ୍ଚଳକୁ ରାସ୍ତା ପରିଷ୍କାର ଇତ୍ୟାଦି କାର୍ଯ୍ୟର ସୁପରଭାଜି କରିବାର ପ୍ରାଥମିକ ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଯାଇଥିଲା। ନଭେମ୍ବର ୩ ତାରିଖ ଠାରୁ ୨୦ ଦିନ ଧରି ମୁଁ ସେଠାରେ ଥିଲି। ସେହି ସମୟରେ ଏରସମା ଅଞ୍ଚଳର ବାତ୍ୟା ବିଧ୍ୱସିତ ବହୁ ଅଞ୍ଚଳକୁ ଯାଇଛି ଏବଂ ଯାହା ଲୋକଙ୍କ ନିକଟରୁ ଶୁଣିଛି, ଦେଖିଛି, ତାକୁ ଉପସ୍ଥାପନା କରିଛି ଏହି କେତୋଟି ଗଳ୍ପରେ। ଏହାଛଡ଼ା ଆଉ ଦୁଇଟି ଗଳ୍ପ ପୁସ୍ତକର କଳେବର ବର୍ଦ୍ଧିତ କରିବାର ପାଇଁ ଉଦ୍ଦିଷ୍ଟ। ଏହି କେତୋଟି ଗଳ୍ପ ମାଧ୍ୟମରେ ପାଠକ, ପାଠିକାମାନଙ୍କୁ ୧୯୯୯ ମସିହା ମହାବାତ୍ୟାର ବିଭୀଷିକା ସଂପର୍କରେ ଏବଂ ମୁଁ, ନିଜେ ଯାହା ମୋ କଟକ ସରକାରୀ ବାସଘରେ ଅକ୍ଟୋବର ୨୯ ତାରିଖ ଦିନ ସ୍ୱଚକ୍ଷୁରେ ଦେଖିଛି ଏବଂ ଅଙ୍ଗେ ନିଭାଇଥିଲି, ତାହା ଉପସ୍ଥାପନ କରିଛି।

ବଟକୃଷ୍ଣ ତ୍ରିପାଠୀ

# ପ୍ରେମ

ଏ ବୟସରେ ପ୍ରେମରେ ପଡ଼ିବା କଥାଟା, ସଦାଶିବଙ୍କ ମନକୁ ବାରମ୍ବାର ଆନ୍ଦୋଳିତ କରୁଥିଲା । ପ୍ରେମ କରିବା ସପକ୍ଷରେ ମନଟାକୁ ଟାଣିନେଲା ବେଳେ ସେ ଭାବୁଥିଲେ ବୟସଟା ସିନା ଷାଠିଏ ଟପିଗଲା କିନ୍ତୁ ଚେହେରାରେ ତ ସେପରି କିଛି ପରିବର୍ତ୍ତନ ଘଟିନି । ଦଶବର୍ଷ ତଳେ ଯାହା ଥିଲା ଏବେ ବି ଠିକ୍ ସେଇପରି ଅଛି । ଅବଶ୍ୟ ଦଶବର୍ଷ ତଳୁ, ମୁଣ୍ଡବାଳକୁ ରଙ୍ଗ ଦେଇ କଳା କରି ଯୁବକ ସୁଲଭ ଚେହେରା ରଖିବା ଅଭ୍ୟାସ ଏ ପର୍ଯ୍ୟନ୍ତ ଗଢ଼ିଆସିଛି । ପ୍ରତ୍ୟେକ ଦିନ ଭୋର ପାଞ୍ଚଟା ବେଳକୁ ଶଯ୍ୟାତ୍ୟାଗ କରି, ପ୍ରାତଃଭ୍ରମଣରେ ଯାଇ, କିଛି ସମୟ ଯୋଗାଭ୍ୟାସ କରିସାରିଲା ପରେ, ଘରକୁ ଫେରି ଆୟୁର୍ବେଦ ସମର୍ଥିତ ବିଭିନ୍ନ ପତ୍ର, ଫଳ ସେବନ କରି ମୁହଁ ଏବଂ ଶରୀରର ଉଜ୍ଜ୍ୱଳତା ବଢ଼ାଇବା ପାଇଁ କିଛି ସମୟ ଦେଇଥାନ୍ତି । ଏପରି ନିୟମିତ ଅଭ୍ୟାସ ତାଙ୍କର ସେଇ ପୂର୍ବ ତାତ୍ତ୍ୱିକ ନିର୍ଦ୍ଦେଶ 'ଶରୀର ମାର୍ଦ୍ଦନଂ ଖଲୁ ଧର୍ମ ସାଧନଂ' ଉପରେ ପର୍ଯ୍ୟବସିତ ହୋଇଥିଲେ ମଧ ତାଙ୍କର ଏପରି କାର୍ଯ୍ୟକୁ ଟାଣି ଓଟାରି ପ୍ରେମ କରିବା ପାଇଁ 'ପ୍ରସ୍ତୁତି କାର୍ଯ୍ୟକ୍ରମ' କହିବାକୁ ସେ ଆଦୌ ମାନିବାକୁ ପ୍ରସ୍ତୁତ ନ ଥିଲେ । ନିଜ ଧର୍ମପତ୍ନୀ ଯେତେବେଳେ ତାଙ୍କୁ, ତାଙ୍କ ଶରୀରଚର୍ଯ୍ୟା ଉପରେ ଉଲୁଗୁଣା ଦେଇ କହନ୍ତି, ସେ ମନେମନେ ଭାବନ୍ତି, ପଚାଶ ବର୍ଷ ଟପି ଯାଇଥିବା ମହିଳାମାନେ, କ'ଣ ତାଙ୍କର ଷାଠିଏ ବର୍ଷୀୟ ସ୍ୱାମୀମାନଙ୍କ ସୁନ୍ଦର ଯୁବସୁଲଭ ଚେହେରା ଦେଖିଲେ ଈର୍ଷା କରନ୍ତି ? ମହିଳାମାନେ ସବୁ କାମରେ ଈର୍ଷା ପରାୟଣା ନ ହେଲେ ସେକ୍ସପିୟର ଭଳି ଜଣେ ମହାନ୍ କବି, ନାଟ୍ୟକାର କ'ଣ ପାଇଁ କହିଥାନ୍ତେ 'ଓମ୍ୟାନ ଦାଇନେମ୍ ଇଜ୍ ଜେଲସି' । ପଚାଶ ବର୍ଷରୁ ଉର୍ଦ୍ଧ୍ୱ ମହିଳାମାନେ ମଧ ତାଙ୍କ ସ୍ୱାମୀମାନଙ୍କ ପ୍ରତି ଈର୍ଷା ଆଚରଣ କରନ୍ତି, ଅନ୍ତେ ବହୁତେ ଏ କଥାର ପ୍ରମାଣ ସଦାଶିବ ପାଇଥିଲେ । ଥରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ବାବୁ ବିମଳ କିଶୋର (ଫୁଲୁବାବୁ) ତାଙ୍କୁ ଏବଂ ତାଙ୍କରି ବୟସର ବନ୍ଧୁମାନଙ୍କୁ ସସ୍ତ୍ରୀକ ତାଙ୍କ ଘରକୁ ରାତ୍ରଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ ।

ରାତ୍ରଭୋଜନ ପୂର୍ବରୁ ବନ୍ଧୁ ବିମଳ କିଶୋର ସୁନ୍ଦର ବିଦେଶୀ ପାନୀୟର ମଧ୍ୟ ବନ୍ଦୋବସ୍ତ କରିଥିଲେ। ଭୋଜନ ଶେଷ ହେବା ପରେ, ବନ୍ଧୁମାନଙ୍କୁ ବିଦାୟ ଦେଲାବେଳେ କେତେକ ବନ୍ଧୁପତ୍ନୀମାନଙ୍କ ଠାରୁ ସଦାଶିବଙ୍କ ପ୍ରତି ଲୋଭନୀୟ କମେଣ୍ଟ ଶୁଣିଲା ପରେ, ଅତୁରୀୟ ସ୍ତରରେ ବିଚରଣ କରୁଥିବା, ସଦାଶିବ ବନ୍ଧୁପତ୍ନୀମାନଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନବାଚକ ସ୍ୱରରେ ପ୍ରସ୍ତାବ ଦେଇ କହିଲେ, 'ଏ ବୟସରେ ଆଉଥରେ ବିବାହ କଲେ କିପରି ହୁଅନ୍ତା।' ହାସ୍ୟରୋଳ ମଧ୍ୟରେ କଥାଟିର ସମାପ୍ତି ଘଟାଇ ଘରକୁ ଫେରିଲା ପରେ, ପରଦିନ ସଦାଶିବ ବାବୁଙ୍କ ପତ୍ନୀ ସେଇ କଥାକୁ ବ୍ରେକଫାଷ୍ଟ ଟେବୁଲ ଉପରେ ଦୋହରାଇ, ସଦାଶିବ, ତାଙ୍କୁ ସମସ୍ତଙ୍କ ଆଗରେ ଅପମାନିତ କରିଥିବାର ଅଭିଯୋଗ ଆଣିଥିଲେ। ବ୍ରେକ୍‌ଫାଷ୍ଟ ଟେବୁଲ ଉପରେ ବସିଥିବା ତାଙ୍କର ଏକମାତ୍ର ବିବାହଯୋଗ୍ୟ ପୁତ୍ର, ମମିଙ୍କର ଏପରି ଅବାସ୍ତବ ଅଭିଯୋଗ ଶୁଣି, ଡାଡିଙ୍କ ସପକ୍ଷରେ କହିବାକୁ ଯାଇ କହିଲେ 'ମମି, ଏ ବୟସରେ ଡାଡିଙ୍କ ସୁନ୍ଦର ସ୍ୱାସ୍ଥ୍ୟକୁ ସମସ୍ତେ ପସନ୍ଦ କଲାବେଳେ, ତୁ ଏତେ ଇର୍ଷାପରାୟଣା ହେଉଛୁ କାହିଁକି ? ବନ୍ଧୁ ମେଳରେ ଥଟ୍ଟା କଥାଟାକୁ ତୁ ଏତେ ସିରିୟସଲି ନେଇ ଏପରି ଅଭିଯୋଗ ଆଣିବାଟା ଠିକ୍ ନୁହେଁ।' ପୁତ୍ରଙ୍କ କଥା ଶୁଣି, ଅଧାଅଣ୍ଟଳ ମୁହଁ ଉପରେ ତୀବ୍ର କ୍ରୋଧ ପ୍ରକାଶ କରି ମା କହିଲେ 'କହିବୁନି କାହିଁକି, ତୋର କ'ଣ ବାହା ହେବାକୁ ବୟସ ହୋଇନି। ତୋ ସାଙ୍ଗମାନଙ୍କ ପୁତ୍ର, କନ୍ୟା ଆମ ଗୃହରେ ନାଟ ଲଗାଇଲା ବେଳେ, ତୁ ବାହାହବା କଥା ପଡ଼ିଲେ, ସମୟ ଗଡେଇ ଚାଲିଛୁ। ମୋତେ ୨୮ ହେଉ ବାହାହେବି। ବୟସ ୩୦ ଗଡୁ ବାହାହେବି। ଏବେ ବାପ କହିଲେଣି ୬୧ ବର୍ଷରେ ବାହା ହେବେ। ଯେମିତିଆ ବାପ, ସେମିତିଆ ପୁଅ। କହିବନି କାହିଁକି ?' ସଦାଶିବ ଦେଖିଲେ କଥାଟିର ପରିସମାପ୍ତି ଘଟାଇବାକୁ ପଡିବ। ଅବଶ୍ୟ ସେତେବେଳକୁ, ସେ ଦୁଇଖଣ୍ଡ ଶୁଖିଲା ରୁଟି, ଡଙ୍କାଏ ସନ୍ତୁଳା ଖାଇ ସାରି ଆଉ ଖଣ୍ଡେ ରୁଟି, ଆଉ ଡଙ୍କାଏ ସନ୍ତୁଳା ପାଇଁ ଅପେକ୍ଷା କରିଥିଲେ। ପରିସ୍ଥିତିକୁ ଆଉ ଆଗେଇବାକୁ ନ ଦେଇ, ସେ ବ୍ରେକ୍‌ଫାଷ୍ଟ ଟେବୁଲ ଛାଡି, ନିଜ ଶୟନକକ୍ଷ ମଧ୍ୟକୁ ପ୍ରବେଶ କଲେ। ହଠାତ୍ ତାଙ୍କ ଆଖିପଡ଼ିଲା, ତାଙ୍କ ଖଟ ଉପରେ ଧଳା କାଗଜରେ ଲେଖାଥିବା

ଗୋଟିଏ କବିତା ଉପରେ। କବିତାଟି ଜଣେ କବୟିତ୍ରୀ ତାଙ୍କ ସଂପାଦନାରେ ପ୍ରକାଶ ପାଉଥିବା ମାସିକ ସାହିତ୍ୟ ପତ୍ରିକାରେ ଛପାଇବା ପାଇଁ ପଠାଇଥାନ୍ତି। ମୁଦା ଲଫାପାରେ ଡାକରେ ଆସିଥିବା ଏଇ କବିତାଟିକୁ ସେ ନ ଖୋଲି, ନ ପଢ଼ି ସେମିତି ଛାଡ଼ିଦେଇ ଚାଲିଯାଇଥିଲେ। ଏବେ ଖୋଲାହୋଇ, ଖଟ ଉପରେ ପଡ଼ିଥିବାର ଦେଖି କାଗଜ ଖଣ୍ଡିକ ଉଠାଇ କବିତାଟିକୁ ପାଠକଲେ। କବିତାର ଶୀର୍ଷକ ଥିଲା 'ପ୍ରେମ'-

'ପହିଲି ପୀରତି ଫୁଲଟିଏ ଯଦି ଫୁଟେ ମନ ଉପବନେ।
ତୁମ ସ୍ନେହ ଶ୍ରଦ୍ଧା ପାଇଛି, ମୁଁ ଯେଣୁ, ଭଲପାଏ ମନେ ମନେ ॥
ଭଲ ପାଇ କେବେ ଭୁଲିଯିବା ନୁହେଁ, ଅନ୍ତରର ପରିଚୟ।
ପହିଲି ଦେଖାରେ ମନ ଯେବେ ମିଶେ ନିବିଡ଼ ହୁଅଇ ସ୍ନେହ ॥
କୋଇଲିର ସୁରେ ଉଚ୍ଛୁଳା ବସନ୍ତେ ତୁମ କଥା ମୁଁ ଯେ ଗାଏ।
ଏତିକି ମାଗଇ ସବୁଦିନ ପାଇଁ ତୁମ ସ୍ନେହ ପାଇଥାଏ ॥
ଚଇତାଳି ବାଆ ବାଟ ଭାଙ୍ଗିଥାଏ ମମତାର ଫୁଲବନେ।
ଦିଗ ମହକଇ ବଉଳ ବାସରେ, ପୁଲକ ଭରଇ ମନେ ॥
କଥା ଦିଅ ଥରେ ସବୁଦିନ ପାଇଁ ରଖିଥିବ ତୁମ ମନେ ॥'

କବିତାଟି ପଢ଼ିସାରିଲା ପରେ, ସଦାଶିବ ମନେ ମନେ ଧରିନେଲେ କ'ଣ ପାଇଁ ତାଙ୍କ ପତ୍ନୀ ଏପରି ଅବାସ୍ତବ ଅଭିଯୋଗ ତାଙ୍କ ବିରୋଧରେ ଆଣିଛନ୍ତି। କବିତାଟିକୁ ଲଫାପା ଭିତରେ ରଖିଲା ବେଳେ ତାଙ୍କର ପିଲାଦିନର କଥାଟିଏ ମନେପଡ଼ିଲା।

ସଦାଶିବ, ଗାଁ ପାଖ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାଶ୍ କରି, ନୂଆ ହୋଇ ନିଉ କ୍ୟାପିଟାଲରେ ଖୋଲିଥିବା ବକ୍ସି ଜଗବନ୍ଧୁ ମହାବିଦ୍ୟାଳୟରେ ନାଁ ଲେଖାଇଥାନ୍ତି। କଲେଜରେ ନାଁ ଲେଖାଇବାକୁ ଆସିଲା ବେଳେ ଗାଁ ଠାରୁ ୩୫ କିଲୋମିଟର ଚାଲି ଚାଲି ଆସିବାକୁ ପଡ଼ିଥିଲା। ବାଟରେ ତିନି ତିନୋଟି ନଦୀ ସାଙ୍ଗକୁ ରାସ୍ତାରେ ଆଠ ଦଶଟି କଲଭର୍ଟ୍। ଆଷାଢ଼ ମାସ ବର୍ଷାରେ ନଦୀରେ କେଉଁଠି ଆଣ୍ଠୁଏ ତ କେଉଁଠି ଅଣ୍ଟାଏ ପାଣି। ବାଟଯାକ କାଦୁଅ। ବସ୍ କଥା ଛାଡ଼ ସାଇକେଲରେ ଯିବା ମଧ୍ୟ କଷ୍ଟ।

ବିଜେବି କଲେଜ ସେତେବେଳେ ଏକ ନମ୍ବର ୟୁନିଟ୍‌ରେ ଚାଲୁଥାଏ। ରହିବାକୁ ହଷ୍ଟେଲ ନ ଥିଲା। ସଦାଶିବ ତାଙ୍କ ଗାଁର ବାବୁ ନରୋତ୍ତମ ମିଶ୍ରଙ୍କ ସରକାରୀ ବସାଘରେ ରହିବାକୁ ସ୍ଥିରକଲେ। ନରୋତ୍ତମ ସଚିବାଳୟରେ ସେତେବେଳେ ଗ୍ରେଡ୍‌ଟୁ କିରାଣୀ। ସରକାରୀ ବସା ପାଇଥାନ୍ତି ପଶ୍ଚିମ ମାର୍କେଟ୍ ବିଲିଡିଂ ପଛପଟେ। ସ୍ୱଳ୍ପ ବେତନ ଯୋଗୁ, ନରୋତ୍ତମଙ୍କ ପିଲାମାନେ ଅଧେଦିନ ଗାଁରେ ରହିଲା ବେଳେ ଆଉ ଅଧେଦିନ ତାଙ୍କ ପାଖରେ ରହୁଥିଲେ। ନରୋତ୍ତମ ପରିଶ୍ରମୀ, ସଚ୍ଚୋଟ ଏବଂ ଅତ୍ୟନ୍ତ କର୍ତ୍ତବ୍ୟପରାୟଣ କର୍ମଚାରୀ ହୋଇଥିବା ଦୃଷ୍ଟିରୁ ଅଧିକ ସମୟ ଅଫିସ କାର୍ଯ୍ୟରେ ମଜ୍ଜି ରହି ତାଙ୍କର ପେଟ ରୋଗ ଆରମ୍ଭ ହୋଇଥାଏ। ସଚିବାଳୟରୁ ସନ୍ଧ୍ୟା ସାତଟା ପରେ ଫେରି, ଖାଲି ରୁଟି ସାଙ୍ଗକୁ ଅମୃତଭଣ୍ଡା ପଡିଥିବା ସନ୍ତୁଳା ଖାଇ ରାତି ଦଶଟା ପରେ ଘରେ ଲାଇଟ ଜଳାନ୍ତିନି।

ସଦାଶିବ କିଛିଦିନ ରହିଲାପରେ, ନରୋତ୍ତମଙ୍କ ରୁଟି ସାଙ୍ଗକୁ ଅମୃତଭଣ୍ଡା ସନ୍ତୁଳାକୁ ନିଜର ପ୍ରିୟ ଖାଦ୍ୟ ଏବଂ ରାତି ଦଶଟା ପୂର୍ବରୁ ଶଯ୍ୟାଧାରଣ କରିବା ଅଭ୍ୟାସ କରିନେଲେ। ସେଇଦିନ ଠାରୁ ରାତିରେ ରୁଟି ସନ୍ତୁଳା ତାଙ୍କର ଖାଦ୍ୟ, ଯଦିଓ ତାଙ୍କର ପତ୍ନୀ, ପୁତ୍ର, କନ୍ୟା ସନ୍ତୁଳା ନାଁ ଶୁଣିଲେ ଖାଇବା ଟେବୁଲ ଛାଡ଼ି ଖଣ୍ଡେଦୂରରେ ଠିଆହୋଇ ଇଂରାଜୀ ମିଡିୟମ ବିଦ୍ୟାଳୟର ଆଙ୍ଗ୍ଲୋଂଇଣ୍ଡିୟାନ୍ ମିସ୍‌ମାନଙ୍କ ପାଖରୁ ଶିଖିଥିବା ଇଂରାଜୀ ଶବ୍ଦ ଉଚ୍ଚାରଣ କରି କହନ୍ତି 'ଉଇ ହେଟ୍ ସଣ୍ଟୁଳା।'

ନରୋତ୍ତମଙ୍କ ବସାଘରେ ଥିବା ସମୟରେ ସଦାଶିବଙ୍କ ପରିଚୟ ହୁଏ ସୁରେନ୍ଦ୍ରଙ୍କ ସହିତ। ସୁରେନ୍ଦ୍ର ଆଇ.ଏ. ପାଶ୍ କରି ଭୁବନେଶ୍ୱରରେ ଚାକିରି ଖୋଜିବା ପାଇଁ ଯୋଗାଡ଼ଯନ୍ତରେ ଥିଲେ। ସୁର ଦେଖିବାକୁ ଯେପରି ସୁନ୍ଦର କଥା କହିବାରେ ପାଟିରେ ବାଟୁଳି ବାଜେନି। ଚାକିରି ମିଳି ନ ଥିବା ଯୋଗୁ, ଦୁଇଟି ଟିଉସନ କରି କ୍ୟାପିଟାଲରେ ରହିବା ଖର୍ଚ୍ଚ ଯୋଗାଡ଼ କରୁଥିଲେ। ସୁରେନ୍ଦ୍ରଙ୍କ ଗ୍ରାମ, ସଦାଶିବଙ୍କ ଗାଁ ପାଖରେ। ତେଣୁ ଟିଉସନ ସାରି ଫେରିବା ବାଟରେ, ସେ ପ୍ରାୟ ପ୍ରତ୍ୟେକ ଦିନ, ସଦାଶିବଙ୍କ ସଙ୍ଗେ ଘଣ୍ଟେ ଅଧଘଣ୍ଟେ ବସି ଦୁଃଖସୁଖ ହୋଇ ଫେରନ୍ତି। କିଛିଦିନ ପରେ ସୁରେନ୍ଦ୍ର ନୟାଗଡ଼ ଜିଲ୍ଲାରେ ଗୋଟିଏ ହାଇସ୍କୁଲରେ ମାଷ୍ଟର ଚାକିରିଟିଏ ପାଇଲେ। ଚାକିରି ପାଇଲା ପରେ,

ସେ ଭୁବନେଶ୍ୱର ଛାଡ଼ି ନୟାଗଡ଼ ଗଲାବେଳେ ସଦାଶିବଙ୍କୁ ଅନୁରୋଧ କଲେ ଯେ ସେ ଯେଉଁ ଡେପୁଟୀ ସେକ୍ରେଟାରୀଙ୍କ ଏକାଦଶ ଶ୍ରେଣୀର ଝିଅକୁ ଟିଉସନ କରୁଛନ୍ତି ସେଇ ଝିଅର ଟିଉସନ ଦାୟୀତ୍ୱ ସଦାଶିବ ଗ୍ରହଣ କରନ୍ତୁ। ଆଗକୁ ମାଟ୍ରିକ ପରୀକ୍ଷା ଥିବା ଦୃଷ୍ଟିରୁ ତାଙ୍କର ଗଣିତରେ ଟିଉସନ ହେବା ଅତ୍ୟନ୍ତ ଜରୁରୀ।

ସଦାଶିବଙ୍କ ଗଣିତଜ୍ଞାନ ଅତ୍ୟନ୍ତ ଉତ୍ତମ। କଲେଜରେ ବିଜ୍ଞାନରେ ଛାତ୍ରଥିବା ଦୃଷ୍ଟିରୁ ଗଣିତ ତାଙ୍କର ସବ୍‌ଜେକ୍ଟ ମଧ୍ୟ ଥାଏ। ସନ୍ଧ୍ୟାବେଳେ, ପ୍ରତ୍ୟେକ ଦିନ ଘଣ୍ଟାଏ ଟିଉସନ୍ କଲେ ୩୦ଟଙ୍କା ମିଳିବ। ପ୍ରସ୍ତାବଟି ମନ୍ଦ ନୁହେଁ ବୋଲି, ସଦାଶିବ ମନେମନେ ବିଚାର କଲାବେଳେ, ଆର୍ଥିକ ସ୍ୱଚ୍ଛଳତା ନ ଥିବା ଦୃଷ୍ଟିରୁ ତା'ର ଆବଶ୍ୟକତା ମଧ୍ୟ ଅନୁଭବ କରୁଥିଲେ। ଦିନକ ପରେ, ସେ ତାଙ୍କର ସମ୍ମତି ସୁରେନ୍ଦ୍ରଙ୍କୁ ଜଣାଇଦେଲେ। ସୁର ନୟାଗଡ଼ ଯାତ୍ରା କରିବା ପୂର୍ବରୁ ସଦାଶିବଙ୍କୁ ଡେପୁଟୀ ସେକ୍ରେଟାରୀ ମି ମହାପାତ୍ରଙ୍କ ଘରେ ପରିଚୟ କରାଇଦେଇ ତାଙ୍କ ଝିଅଙ୍କ ଟିଉସନ୍ ଦାୟୀତ୍ୱ ତାଙ୍କ ଉପରେ ନ୍ୟସ୍ତକରି ଚାଲିଗଲେ। ଡେପୁଟୀ ସେକ୍ରେଟାରୀ ମି ମହାପାତ୍ରଙ୍କ ଏକମାତ୍ର କନ୍ୟା ୧୬ ବର୍ଷିୟା ଋତୁପର୍ଣ୍ଣା ବେଶ୍ ସୁନ୍ଦରୀ। ଚମ୍ପା ରଂଗର ଦେହକୁ, ମାର୍ଜ୍ଜିତ ବ୍ୟବହାର। ନାଚ, ଗୀତରେ ସେ ଯେତିକି ଦକ୍ଷ, ଗଣିତ ବିଦ୍ୟାରେ ସେତିକି ଦୁର୍ବଳ। ମିସେସ୍ ମହାପାତ୍ର ସଦାଶିବଙ୍କୁ ଟିଉସନ ଆରମ୍ଭ କରିବା ପୂର୍ବରୁ ଗୋଟିଏ ଘଣ୍ଟାଏ ବ୍ରିଫିଙ୍ଗ ଦେଇ, ଋତୁପର୍ଣ୍ଣାଙ୍କ ଗୁଣର ସଂପୂର୍ଣ୍ଣ ପରିଚୟ ପ୍ରଦାନ କରିବା ସଙ୍ଗେ, ସଦାଶିବଙ୍କୁ ସମୟାନୁବର୍ତ୍ତିତା, ଆଚାର, ବ୍ୟବହାର ସଂପର୍କରେ, କ୍ଷୁଦ୍ର ଭାଷଣଟିଏ ଦେଇଥିଲେ।

ସଂପୂର୍ଣ୍ଣ ମଫସଲ ଗାଁରୁ ଆସିଥିବା ସଦାଶିବ ଭୁବନେଶ୍ୱରରେ ସେ ସମୟର ଆଧୁନିକ ହୋଇ ଉଠୁଥିବା ଋତୁପର୍ଣ୍ଣାଙ୍କ ଡେଲାଇଟ୍ ସାମ୍ନାରେ ଲଣ୍ଠନ ଆଲୁଅ ପରି ପ୍ରତୀୟମାନ ହେଉଥିଲେ। ପ୍ରତ୍ୟେକ ଦିନ ସନ୍ଧ୍ୟାରେ ସଦାଶିବ ଟିଉସନକୁ ଆସିଲାବେଳେ, ଋତପର୍ଣ୍ଣା ସିତାର ଧରି ତାଙ୍କ ପଢ଼ାଘରେ ରିଆଜ ଆରମ୍ଭ କରିଥାନ୍ତି। ସେ ସମୟରେ ତାଙ୍କ ଲୟ ଭଗ୍ନ କରିବା ମନା। ତେଣୁ ସଦାଶିବ କିଛି ସମୟ ପାଇଁ କିଛି ନ ବୁଝିଲେ ମଧ୍ୟ ଏକଧ୍ୟାନରେ ଖଣ୍ଡିଏ ଚେୟାର ଉପରେ ଉପବେସିତ ହୋଇ, ଋତୁପର୍ଣ୍ଣାଙ୍କ କ'ଣ୍ଠସ୍ୱର ଶୁଣିବାକୁ

ବାଧ୍ୟହୁଅନ୍ତି। ସିତାର ଉପରୁ ଆଙ୍ଗୁଳିଗୁଡ଼ିକ ଉଠାଇ ଆଣି, ସିତାରକୁ ତା' ଜାଗାରେ ରଖିଲାବେଳେ, ଋତୁପୂର୍ଣ୍ଣା ଥରେ ଦି'ଥର ପଚାରିଛନ୍ତି, "ସାର୍ ଆପଣଙ୍କୁ କେଉଁ ରାଗଟା ଭଲ ଲାଗେ।'' ସଦାଶିବ ପ୍ରଥମେ "ରାଗ'', ତା' ଛଡ଼ା କେଉଁ "ରାଗ'' ତାଙ୍କୁ ଭଲ ଲାଗେ କିଛି ବୁଝିପାରିଲେ ନାହିଁ। ଲଙ୍କାକୁ ଚୋବେଇ ଦେଲେ, ପାଟି ଯେପରି ରାଗରେ ପୋଡ଼ିଉଠେ, କ'ଣ ଭଲଲାଗେ ନ ବୁଝି ପାରିଥିବା ହେତୁ, କିଛି ଉତ୍ତର ନ ଦେଇ ଚୁପ ରୁହନ୍ତି। ବେଳେବେଳେ, ଋତୁପୂର୍ଣ୍ଣା ପଚାରିଛନ୍ତି, "ଆପଣଙ୍କୁ କ'ଣ ସାର୍ ସଂଗୀତ ଭଲ ଲାଗେନି।" ହଁ କି ନା କହିବା ପୂର୍ବରୁ ସଦାଶିବ ଗଣିତ ବହି ଖୋଲିବା ଯୋଗୁ, ଋତୁପର୍ଣ୍ଣା ଅଧିକ ନ ପଚାରି, ଟେବୁଲ ପାଖରେ ବସନ୍ତି। ଟିଉସନ ମଝିରେ ତାଙ୍କ ଚାକର ଚା' କପେ ଆଣି ଦେଇଥାଆନ୍ତି। ମାତ୍ର ସଦାଶିବ ଚା' ପିଉ ନ ଥିବା ଯୋଗୁ, ସେଇ ଚା' କପ୍‌ଟିକୁ ଋତୁପର୍ଣ୍ଣା ପିଇଦିଅନ୍ତି।

ଟିଉସନ ମଝିରେ, ଋତୁପର୍ଣ୍ଣାଙ୍କ ମା ମିସେସ ମହାପାତ୍ର ବୁଲିଆସନ୍ତି। ସାର ଟିଉସନ କରୁଛନ୍ତି ନା ଗପ ମାରୁଛନ୍ତି। ତାଙ୍କର ଦେଖିବାର ଉଦ୍ଦେଶ୍ୟ ସେ ଭଲଭାବେ ଜାଣନ୍ତି କାରଣ ଋତୁପର୍ଣ୍ଣା ଗପୁଡ଼ି ଝିଅଟେ। ଟିକିଏ ସୁବିଧା ପାଇଲେ ପାଠ ଛାଡ଼ି ଗପ ଆରମ୍ଭ କରିଦେବ। ପରୀକ୍ଷା ପାଖେଇ ଆସୁଥିବା ଦୃଷ୍ଟିରୁ ଋତୁପର୍ଣ୍ଣା ପାଇଁ ସଦାଶିବ, ପ୍ରତ୍ୟେକ ଦିନ ଅଧିକ ସମୟ ଦେବା ପାଇଁ ବାଧ୍ୟ ହେଲେ। ଏଥି ମଧ୍ୟରେ ଋତୁପର୍ଣ୍ଣା, ଗଣିତରେ ସାମାନ୍ୟ ଉନ୍ନତି ମଧ୍ୟ କରିଥାନ୍ତି।

ଟିଉସନ କରିବାର ତିନିମାସ ପରେ। ହଠାତ୍ ସଦାଶିବଙ୍କ ବସାଘରେ ସୁରେନ୍ଦ୍ରଙ୍କ ଆର୍ବିଭାବ ହୁଏ। ନୟାଗଡ଼ରୁ ସଦ୍ୟ ମାଷ୍ଟର ଚାକିରି କରିଥିବା ସୁର ନୂଆବସ୍ତ୍ର ପରିଧାନ କରି ଆସିଥାନ୍ତି। ଭୁବନେଶ୍ୱରରେ ଗୋଟିଏ ଦିନ ରହିଲା ପରେ, ପୁଣି ନୟାଗଡ଼ ଫେରିଯିବେ। ଯିବା ପୂର୍ବରୁ, ଖାଇବା ହୋଟେଲ, ଜଳଖିଆ ଦୋକାନମାନଙ୍କରେ ବାକି ଟଙ୍କାପଇସା ତୁଟାଇ ଦେଲେ। ପରଦିନ ବସ୍‌ଷ୍ଟାଣ୍ଡ ପାଖେ, ସୁରେନ୍ଦ୍ରଙ୍କୁ ବିଦାୟ ଦେଲା ବେଳେ ସୁର ସଦାଶିବଙ୍କ ହାତକୁ ଗୋଟିଏ ଛୋଟିଆ କାଗଜ ପ୍ୟାକେଟ୍ ବଢ଼ାଇ ଦେଇ ଅନୁରୋଧ କରି କହିଲେ ସେଇ ପ୍ୟାକେଟ୍‌ଟିକୁ ଋତୁପର୍ଣ୍ଣାଙ୍କୁ ଦେଇଦେବା ପାଇଁ। ବସ୍‌ଷ୍ଟାଣ୍ଡରେ ସୁରେନ୍ଦ୍ରଙ୍କୁ ଛାଡ଼ିଲା ପରେ ସଦାଶିବ ସିଧା ଯାଇଥିଲେ ଋତୁପର୍ଣ୍ଣାଙ୍କ ଘରକୁ। ସଦାଶିବଙ୍କ ଆସିବା ସମୟ ଗଡ଼ିଯିବାର ଲକ୍ଷ୍ୟ କରି ଋତୁପର୍ଣ୍ଣା ଦାଣ୍ଡ ବାରଣ୍ଡାରେ ଅପେକ୍ଷା

କରିଥାନ୍ତି। ଗେଟ୍ ପାଖରେ, ସଦାଶିବଙ୍କୁ ଦେଖୁ ଦେଖୁ ଋତୁପର୍ଣ୍ଣା କହିଲେ "ସାର୍ ଆଜି ଏତେ ଡେରି କଲେଣି ମୁଁ କେତେବେଳୁ ଆପଣଙ୍କୁ ଅପେକ୍ଷା କରିବସିଛି।" ସଦାଶିବ, ସୁରେନ୍ଦ୍ରଙ୍କ ଆଗମନ, ପ୍ରତ୍ୟାବର୍ତ୍ତନ ବାର୍ତ୍ତାଦେବା ସଙ୍ଗେ ସଙ୍ଗେ ସେ ପଠାଇଥିବା କାଗଜ ପ୍ୟାକେଟ୍‌ଟିକୁ ଋତୁପର୍ଣ୍ଣାଙ୍କ ହାତକୁ ବଢ଼ାଇ ଦେଇଥିଲେ। ସେତିକି ବେଳେ ମିସେସ୍ ମହାପାତ୍ର ଘର ଭିତରୁ ବାହାରି ଆସି, ଋତୁପର୍ଣ୍ଣା ଧରିଥିବା ପ୍ୟାକେଟ୍‌ଟିକୁ କିଏ ପଠାଇଛି ବୋଲି ପଚାରିଥିଲେ। ପୂର୍ବତନ ଟିଉସନ ସାର୍, ସୁରେନ୍ଦ୍ର ଋତୁପର୍ଣ୍ଣାଙ୍କ ପାଇଁ ଏଇ ପ୍ୟାକେଟ୍‌ଟିକୁ ପଠାଇଥିବା କହି ସଦାଶିବ ଟିଉସନ ଆରମ୍ଭ କଲେ।

ପ୍ୟାକେଟ୍‌ଟି ଭିତରକୁ ନେବାର ୧୦ ମିନିଟ୍ ପରେ ମିସେସ୍ ମହାପାତ୍ର ଉଗ୍ର ଚଣ୍ଡୀରୂପ ଧାରଣ କରି, ହସ୍ତରେ ଛାଞ୍ଚୁଣି ମୁଠା ସହ, ସଦାଶିବଙ୍କ ପାଖରେ ପହଞ୍ଚି ଆରମ୍ଭ କଲେ "ଏଠି ପାଠପଢ଼ା ଚାଲିଛି, ନା ପ୍ରେମ ଚାଲିଛି?" ସଦାଶିବ ପ୍ରଥମେ କିଛି ବୁଝି ପାରିଲେନି। ଋତୁପର୍ଣ୍ଣା ଆଶ୍ଚର୍ଯ୍ୟ ହୋଇ ମମିଙ୍କ ଆଡ଼େ ଚାହିଁଥାନ୍ତି। ମିସେସ୍ ମହାପାତ୍ର - ସେଇ କାଗଜ ପ୍ୟାକେଟ୍ ମଧ୍ୟ ଖଣ୍ଡେ ମଖମଲି ସଫା କନା ଆଉ ଖଣ୍ଡେ ଗୋଲାପି କାଗଜ ଉପରେ "ଆଉ ଲଭ୍ ଇଉ" ଲେଖାଥିବା ଲେଟର ପ୍ୟାଡକୁ ଦେଖାଇ ଗୋଟିଏ ହାତରେ ଛାଞ୍ଚୁଣୀ, ଆଉ ଗୋଟିଏ ହାତରେ ଆଇ ଲଭ୍ ଇଉ ଗୋଲାପି ଚିଠିଲେଖା କାଗଜ ଖଣ୍ଡିକ ଧରିଥିଲେ। ସେଥିରେ ଲେଖାଥିଲା - "ଋତୁ ତମେ ମୋ ପାଇଁ ଏଇ କନାରେ "ଆଇ ଲଭ୍ ଇଉ" ଲେଖି ରୁମାଲ ତିଆରି କରିଦେବ" ଆଇ ଲଭ୍ ଇଉ। ଚଣ୍ଡୀରୂପ ଧାରଣ କରିଥିବା ମିସେସ ମହାପାତ୍ରଙ୍କ ଛାଞ୍ଚୁଣୀ ଆସି ସଦାଶିବଙ୍କ ପିଠିରେ ବେତ ପରି ଲହ ଲହ ହେଉଥାଏ। ସଦାଶିବ, ମିସେସ୍ ମହାପାତ୍ରଙ୍କ ଆଡ଼େ ଚାହିଁ କହିଲେ, "ଆଜ୍ଞା ମୁଁ ତ କିଛି ଜାଣିନି। ସୁରେନ୍ଦ୍ର ମୋ ହାତରେ ନୟାଗଡ଼ ଗଲାବେଳେ, ଏଇ ପ୍ୟାକେଟ୍‌କୁ ଋତୁପର୍ଣ୍ଣାକୁ ଦେଇ ଦେବାକୁ କହିଥିଲା। ମୁଁ ତାକୁ ଖୋଲିନି କି କ'ଣ ଅଛି ବି ଜାଣିନି।

ତାଙ୍କ କଥା ଶୁଣି ମିସେସ୍ ମହାପାତ୍ର ଆହୁରି ଉଗ୍ରମୂର୍ତ୍ତି ଧାରଣ କରି କହିଲେ "ଜାଣିନ, ଅଜଣା ଚାଉଳର ଭାତ ଖାଉଛ। ଏସବୁ ତୁମର କାମ। ସୁରେନ୍ଦ୍ର ବାବୁ ଅତି ଭଦ୍ରଲୋକ। ସେ କେବେହେଲେ ଏପରି କାମ କରିବେ ନାହିଁ। ତୁ ହଉଛୁ ମୌନ ମୁହାଁ ନାଟର ଗୋବର୍ଦ୍ଧନ। ପ୍ରେମ କରିବୁ ନା" –

ଏତିକି କହି ସେ ଛାଞ୍ଚୁଣୀ ଉଠାଇ ପାହାରେ ପକାଇଲା ବେଳେ, ଋତୁପର୍ଣ୍ଣା ଛାଞ୍ଚୁଣୀଟି ଧରିନେଇ କହିଲେ, "ମମି ଏସବୁ କ'ଣ କରୁଛୁ"। ଛାଞ୍ଚୁଣୀ ମୁଠାକୁ ତା' ହାତରୁ ଛଡ଼ାଇ ଆଣି ମିସେସ୍ ମହାପାତ୍ର କହିଲେ ତୁ ବି ପକ୍କା ମଉନ ମୁହିଁ। ଏଠି ପାଠପଢ଼ା ପରିବର୍ତ୍ତେ ପ୍ରେମ ଚାଲିଛି।" ଏତିକି କହିଲା ବେଳେ, ସଦାଶିବ ପ୍ରମାଦ ଗଣୁଥିଲେ। କାଗଜ ପ୍ୟାକେଟ୍‌ଟା ଏପରି ଏକ ବିସ୍ଫୋରଣ ଅବସ୍ଥା ସୃଷ୍ଟି କରିବ, ସେ କେବେ କଳ୍ପନା କରିନଥିଲେ। ପ୍ରେମ କରିବା କଥା ଛାଡ଼ି, ପ୍ରେମ ନାଁ ବି ଧରି ନ ଥିଲେ। ବୋକାଙ୍କ ପରି ସେ ଚାହିଁ ରହିଥିବା ବେଳେ ମିସେସ୍ ମହାପାତ୍ର ପୁଣି ଗର୍ଜିଉଠି କହିଲେ "ଯାଉଛୁନା ଦେବି ପାହାରେ"। ସେତିକିରେ ସଦାଶିବ ତାଙ୍କ ଘରୁ ବାହାରି ଗେଟ୍ ପାରିହେବାକୁ ବାଟ ପାଇ ନ ଥିଲେ। ଜୀବନରେ ଆଉ କେବେ ଟିଉସନ୍ କରିନାହାନ୍ତି କି ଟିଉସନ୍ ନାଁ ଧରି ନାହାନ୍ତି।

ସେଇଦିନଠୁ ପ୍ରେମ କରିବା ଦୂରର କଥା "ପ୍ରେମ" ଶବ୍ଦଟା ଶୁଣିଲେ ତାଙ୍କ ଦେହରେ ବିଜୁଳି କରେଣ୍ଟ ମାଇଲା ପରି ଲାଗେ। ଆଜି ପୁଣି ଷାଠିଏ ବର୍ଷ ବୟସରେ ତାଙ୍କ ପତ୍ନୀ ପରୋକ୍ଷରେ ସେଇ 'ପ୍ରେମ'କୁ ନେଇ ତାଙ୍କୁ ଆକ୍ଷେପ କରିବାକୁ ଯାଉଛନ୍ତି। ଯୁବତୀ କବୟତ୍ରୀଙ୍କ "ପ୍ରେମ" ଶୀର୍ଷକ କବିତାଟି ତାଙ୍କ ପାଖକୁ ଲେଖାଯାଇ ନାହିଁ, ତାଙ୍କ ସଂପାଦନାରେ ଛପା ହୋଇଥିବା ସାହିତ୍ୟ ପତ୍ରିକାରେ ଛପାହେବାକୁ ଆସିଛି ସେ କଥା ସେ ନିଜ ପତ୍ନୀଙ୍କୁ ବୁଝାଇପାରିଲେ ନାହିଁ, ଯେପରି ଋତୁପର୍ଣ୍ଣାଙ୍କ ପାଖକୁ ସୁରେନ୍ଦ୍ର ଦେଇଥିବା 'ଆଇ ଲଭ୍ ଇଉ' ପ୍ୟାକେଟ୍‌ଟିକୁ, ସେ ଦେଇନାହାନ୍ତି ବୋଲି ମିସେସ୍ ମହାପାତ୍ରଙ୍କୁ ବୁଝାଇ ପାରି ନ ଥିଲେ। ଏବେ ବୁଝୁଛନ୍ତି 'ପ୍ରେମ' ଶବ୍ଦଟି ଯେତିକି ନୈସର୍ଗିକ ସେତିକି ମାରାତ୍ମକ ମଧ।

—୦୦୦—

# ଧଳା ଚଦର

ସେଦିନ ରାତ୍ରୀ ଭୋଜନ ପରେ ଖଟ ଉପରେ ଶୋଇ, ଧଳା ଚଦର ଖଣ୍ଡିକୁ ଦେହ ଉପରକୁ ଟାଣି ନେଇ, ସନ୍ଧ୍ୟା ସଂକଳନ ଖବର କାଗଜ ଉପରେ ଆଖି ବୁଲାଇ ନେଲା ବେଳେ, କାଶ୍ମୀରର ପୁଲୱାମା ଜିଲ୍ଲାର ନଦୀ ମାର୍ଗ ଗ୍ରାମରେ ପାକିସ୍ତାନ ପ୍ରୋତ୍ସାହିତ ଆତଙ୍କବାଦୀଙ୍କ ଗଣହତ୍ୟା ସମ୍ବାଦ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା। ବିଶ୍ୱକପ କ୍ରିକେଟ ପ୍ରତିଯୋଗିତାର ସର୍ବଶେଷ ଖେଳ ଭାରତ - ଅଷ୍ଟ୍ରେଲିଆ ମଧ୍ୟରେ ଚାଲିଥିବା ବେଳେ ଏଇ ଗ୍ରାମର କେତେକ ପଣ୍ଡିତ ପରିବାର ଟିଭିରୁ ଖେଳ ଦେଖିସାରି ଶୋଇବାକୁ ଯାଉଥାନ୍ତି। ହଠାତ୍ ଭାରତୀୟ ସୈନିକ ପୋଷାକ ପିନ୍ଧିଥିବା କେତେଜଣ ସଶସ୍ତ୍ର ଆତଙ୍କବାଦୀ, ଆତଙ୍କବାଦୀଙ୍କୁ ଖୋଜୁ ଥିବା ବାହାନା କରି, ସେମାନଙ୍କୁ ବନ୍ଧୁକ ମୁନରେ ଘର ବାହାରକୁ ଟାଣି ଆଣି ନିର୍ମମ ଭାବରେ ଏଗାର ଜଣ ମହିଳା ବାର ଜଣ ପୁରୁଷ ଦୁଇ ଜଣ ଶିଶୁଙ୍କୁ ହତ୍ୟା କଲେ। ସେଇ ଗ୍ରାମର ଶେଷ ମୁଣ୍ଡରେ ଥିବା ପୋଲିସ କ୍ୟାମ୍ପର ନିରସ୍ତ୍ର ପୁଲିସ କର୍ମଚାରୀମାନେ ଏଇ ଗଣ ହତ୍ୟାର ମୂକସାକ୍ଷୀ ରୂପେ ଠିଆ ହୋଇଥାନ୍ତି। ପଣ୍ଡିତ ପରିବାରର ସଦସ୍ୟମାନଙ୍କୁ ହତ୍ୟା କରିବା ପୂର୍ବରୁ ଆତଙ୍କବାଦୀମାନେ ପୁଲିସ କ୍ୟାମ୍ପ ମଧ୍ୟରେ ପ୍ରବେଶ କରି ନିଦ୍ରିତ ପ୍ରହରୀମାନଙ୍କ ଅସ୍ତ୍ରଶସ୍ତ୍ର ଲୁଟି ନେଇ ସେମାନଙ୍କୁ ଏଇ ଗଣହତ୍ୟାର ମୂକସାକ୍ଷୀ ସଜାଇ ଦେଇଥଲେ। ସେଇ ସମ୍ବାଦ ପତ୍ରରେ ଗୋଟିଏ ଧାଡ଼ିରେ ୨୪ ଜଣ ମୃତ ବ୍ୟକ୍ତିଙ୍କ ଶବକୁ ଧଳା ଚଦର ଘୋଡ଼ା ଯାଇ ଶେଷକୃତ୍ୟ ସଂପନ୍ନ କରିବା ପାଇଁ ରଖାଯାଇଥିବାର ଫଟୋଚିତ୍ର ମଧ୍ୟ ଛପାଯାଇଥିଲା। ଖବରଟା ପଢୁ ପଢୁ ନିଜ ଦେହରୁ କ୍ଷଣକ ପାଇଁ ଧଳା ଚଦର ଖଣ୍ଡିକ ଫୋପାଡ଼ି ଦେଇ ଖବର କାଗଜର ଅନ୍ୟ ପୃଷ୍ଠା ଓଲଟାଇ ଥିଲେ, ହରେକୃଷ୍ଣ। ଆର ପୃଷ୍ଠାରେ ଆଉ ଏକ ଫଟୋଚିତ୍ର ଦେଖି, ହରେକୃଷ୍ଣ ଖଟ ଉପରେ ବସି ପଡ଼ିଲେ। ପିନ୍ଧିଥିବା ଚଷମାଟିକୁ ଆଖି ଉପରୁ କାଢ଼ି ନେଇ ସେଜ ଉପରେ ପଡ଼ିଥିବା ଗାମୁଛା କାନିରେ ଚଷମାର କାଚକୁ ଭଲ ଭାବରେ ପୋଛି ପୁଣି ଆଖିରେ ଦେଲାପରେ ହଠାତ ତାଙ୍କ

ପାଟିରୁ ବାହାରିପଡ଼ିଲା, ଆରେ ଇଏତ ପୀତବାସ ମିଶ୍ର ମୋ କ୍ଲାସମେଟ, ଏଜି ଅଫିସର ଅଡ଼ିଟ୍ ଅଫିସର। ତା' ଦେହରେ ଧଳା ଚଦର ଘୋଡ଼ାଯିବା ଫଟୋ ଦେଖି ସେ ଚମକି ପଡ଼ିଲେ। ୪ ମାସ ତଳେ ସରକାରୀ ଚାକିରିରୁ ଅବସର ନେଇ ପୀତବାସ ତା'ର ଏକ ମହଲା ଘରକୁ ଦୋମହଲା କରୁଥିଲା ବେଳେ ତା' ସହିତ ତାଙ୍କ ଗାଁରେ ଦେଖା ହୋଇଥିଲା। କହୁଥିଲା, ତଳ ମହଲା ଭଡ଼ା ଦେଇ ଉପର ମହଲାରେ ରହିବ। ଭଲ ସ୍ୱାସ୍ଥ୍ୟ, କଥାବାର୍ତ୍ତାରେ ବାଟୁଳି ବାଜୁ ନ ଥିଲା। ଆଗାମୀ ଅବସର ଦିନକୁ ସ୍ୱଚ୍ଛନ୍ଦରେ ଉପଭୋଗ କରିବାର ପରିକଳ୍ପନା କରୁଥିଲା। ହରେକୃଷ୍ଣ, ଖଟ ବାଡ଼ା ଉପରେ ଆଉଜି ପଡ଼ି ସମ୍ବାଦଟି ଭଲଭାବେ ପଢ଼ିବାକୁ ଲାଗିଲେ। ହୃଦଘାତରେ ଅବସରପ୍ରାପ୍ତ ଅଡ଼ିଟରଙ୍କ ମୃତ୍ୟୁ। ହୃଦଘାତ କାହିଁ ପୀତବାସ ତ କେବେ ତାଙ୍କୁ ଏଇ କଥା କହି ନ ଥିଲା। ବରଂ ସେ ସବୁ ଦୃଷ୍ଟିରୁ ସୁସ୍ଥ, ସବଳ ଅଛି, ପ୍ରତ୍ୟେକ ଦିନ ମର୍ଣ୍ଣିଂ ୱାକ୍ କରୁଛି। ତାଛଡ଼ା ତା'ର ତ ସିଗାରେଟ କି ମଦ ପିଇବା ଅଭ୍ୟାସ ନ ଥିଲା। ତେବେ ସେ କିପରି ହୃଦଘାତରେ ଚାଲିଗଲା? ହରେକୃଷ୍ଣ, ପ୍ରକାଶ ପାଇଥିବା ଖବରକୁ ଆସ୍ତେ ଆସ୍ତେ ନିରେଖି ନିରେଖି ପଢୁଥାନ୍ତି। ମର୍ଣ୍ଣିଂ ୱାକ୍‌ରୁ ଫେରି, ଖବର କାଗଜ ପଢୁଥିବା ବେଳେ ହଠାତ୍ ହୃଦଘାତରେ ଆକ୍ରାନ୍ତ ହୋଇ ଡାକ୍ତରଖାନା ଯିବା ବାଟରେ ତାଙ୍କର ମୃତ୍ୟୁ ହୋଇଛି। ପ୍ରକାଶ ପାଇଥିବା ଖବର ପଢ଼ିସାରିଲା ପରେ ମନକୁ ମନ ହରେକୃଷ୍ଣ କହିଲେ ପୀତବାସଟା ଚାଲିଗଲା। ଆଉଥରେ ସେଇ ଧଳା ଚଦର ଘୋଡ଼ା ଫଟୋ ଉପରେ ଆଖି ବୁଲାଇଲା ବେଳେ ତାଙ୍କ ଆଖି ପିତବାସର ମୁହଁ ଉପରେ କ୍ଷଣକ ପାଇଁ ଲାଗି ରହିଲା। ହଁ ସେ ଠିକ୍ ଚିହ୍ନି ପାରିଛନ୍ତି। ଏଇତ ପୀତବାସ ମିଶ୍ର-ପ୍ରକାଶ ପାଇଥିବା ଖବର ନିଃସନ୍ଦେହ। ଖବର କାଗଜକୁ ଭାଙ୍ଗି ଖଟ ତଳକୁ ପକାଇ ଦେଲା ପରେ ହରେକୃଷ୍ଣ ଭାବିବାକୁ ଲାଗିଲେ ପୀତବାସ ପୁଅର ବାହାଘର ସାରିଥିଲା। ଝିଅ କି ପୁଅ ଆଉ ବିବାହ ହେବାକୁ ନ ଥିଲେ। ତା'ର ତ ସେପରି କିଛି ଲାୟାବିଲିଟି ନ ଥିଲା, ଟେନସନ ନ ଥିଲା, ତଥାପି ସେ ହୃଦଘାତରେ ଚାଲିଗଲା? ଖଟ ଉପରେ ଧଳା ଚଦରଟା ସମୁଦ୍ର କୂଳକୁ ମାଡ଼ି ଆସିଥିବା ଲହଡ଼ି ପରେ ଧଳା ଫରଫର ଧାର ପରି ଅଙ୍କା ବଙ୍କା ଭଙ୍ଗିରେ ପଡ଼ିଥାଏ। ତାଙ୍କ ହାତ ଆଉ ସେ ଚଦରଟାକୁ ଉଠାଇ ଆଣି ନିଜ ଦେହ ଉପରେ ପକାଇ ଦେବାକୁ ସାହସ କରୁ ନ ଥାଏ। ଖଟ ବାଡ଼ାକୁ

ଆଉଜି ବସି ଥିବା ବେଳେ ସେ ଭାବୁଥିଲେ, ହଁ ପୀତବାସ ଗଲା, ତା' ଆଗରୁ ତ ଆଉ କେତେଜଣ ସାଙ୍ଗ ଚାଲିଗଲେଣି। ଦୁନିଆରେ ଯିବା ଆସିବାତ ଲାଗିଛି। ଏତେ ବ୍ୟସ୍ତ କାହିଁକି - ତା' ପାଳି ବି ପଡ଼ିବ...। ତା' ପାଳି କଥା, ମନକୁ ଆସିଲା ବେଳେ ହରେକୃଷ୍ଣ, ପୁଣି ଥରେ ଭାବିଲେ। ସତେତ ନଦୀ ମାର୍ଗ ଗ୍ରାମର ଏଇ ପଣ୍ଡିତ ପରିବାରର ଲୋକମାନେ କ୍ଷଣକ ପୂର୍ବରୁ ବିଶ୍ୱକପ୍ କ୍ରିକେଟ ଦେଖିବାରେ ମଜ୍ଜି ଯାଇଥିଲେ। ଛକା, ଚଉକା ମାରିଲା ବେଳେ, ଉତ୍ଫୁଲ୍ଲିତ ହୋଇ ତାଳି ମାରୁଥିଲେ। ସେମାନେ ଟି.ଭି ଆଗରେ ବସି ତାଳି ମାରୁଥିବା ବେଳେ ଆତଙ୍କବାଦୀମାନେ ଗାଁ ମୁଣ୍ଡ ତୋଟା ପାଖରେ ବସି ବନ୍ଧୁକରେ ଗୁଳି ଭରୁଥିଲେ। ସେମାନେ କ'ଣ କେବେ ଭାବିଥିଲେ ଯେ, ମାତ୍ର ପନ୍ଦର କୋଡ଼ିଏ ମିନିଟ ପରେ ଆତତାୟୀଙ୍କ ବନ୍ଧୁକ ଗୁଳି ତାଙ୍କ ଛାତିରେ ଭେଦ କରିବ? ହରେକୃଷ୍ଣ ନିଜକୁ ବୋଧ ଦେବା ପାଇଁ ମନକୁ ମନ କହିଲେ ଏ ସଂସାରର ମାୟା ବଡ଼ ବିଚିତ୍ର। କିଏ ମାୟା ଭିତରକୁ ପଶିବ ନା ମାୟାଧରଙ୍କ ମାୟା କଥା ବୁଝି ପାରିବ। ମନକୁ ମନ ଏତକ କହି ସାରି ବେଡ଼ ଲାଇଟ ସୁଇଚ ଟିପି ଘରକୁ ଅନ୍ଧକାର କରିଦେଲେ। ସେଇ ଅନ୍ଧାର ଭିତରେ ସେ ପୁଣି ତାଙ୍କ ଗୋଡ଼ ତଳେ ଅଙ୍କା ବଙ୍କା ହୋଇ ପଡ଼ିଥିବା ଧଳା ଚଦରକୁ ନିଜ ଦେହ ଉପରକୁ ଟାଣି ଆଣି ଶୋଇବାକୁ ଚେଷ୍ଟା କଲେ। ହରେକୃଷ୍ଣ ନିଜେ ଦେହରେ ହାତ ମାରି ଜାଣିବାକୁ ଚେଷ୍ଟା କଲେ। ନିଦ ତ ଆସିଲାନି। କିନ୍ତୁ ସେଇ ଧଳା ଚଦର ତଳେ ତାଙ୍କ ଫୁଙ୍ଗୁଳା ଦେହଟା ହଠାତ କିପରି ବରଡ଼ା ପତ୍ର ପରି ଥରିବାକୁ ଲାଗିଲା। ହରେକୃଷ୍ଣ ପୁଣିଥରେ ନିଜ ଦେହରେ ହାତମାରି ନିଜକୁ ଜାଣିବାକୁ ଚେଷ୍ଟାକଲେ, ସତରେ ତାଙ୍କ ଦେହଟା ଥରୁଛି। ଚଦର ତଳେ ସେ ନିଜ ଛାତି ଉପରେ ହାତ ରଖିଲେ। ପ୍ରକୃତରେ ଛାତିଟା ଧଡ଼ ଧଡ଼ ପଡୁଚି। ହାର୍ଟ୍ ବିଟ୍ ବଢ଼ିଯାଉଛି। କିଛି ସମୟ ପରେ ସେ ଅନୁଭବ କଲେ, ତାଙ୍କ ପାଟି ଅଠା ଅଠା ହୋଇ ଯାଉଛି। ମନେ ମନେ ଭାବିଲେ ତାଙ୍କୁ ହାର୍ଟ୍ ଆଟାକ୍ ହୋଇଯିବକି? ମନକୁ ଶାନ୍ତ କରିବା ପାଇଁ, ସେ ଖଟ ଉପରେ ଶବାସନରେ ଶୋଇବାକୁ ଚେଷ୍ଟା କଲେ। ଶବାସନରେ ଶୋଇ ମନକୁ କିଛିଟା ନିୟନ୍ତ୍ରଣ କରିପାରିବେ ବୋଲି ତାଙ୍କର ଧାରଣା ହେଲା। ଆଖିବୁଜି ସେ ମନକୁ ଭୁଲାଇବା ପାଇଁ ଚେଷ୍ଟା କଲେ। ତଳ ଘରେ ପୁଅ ଶୁଏ, ଏ ପର୍ଯ୍ୟନ୍ତ ଫେରିନି। ତା'ର ଫେରିବା ସମୟ ତାକୁ ଜଣା।

ଘରେ ସେ ଯେପରି ଜଣେ ପେୟିଂ ଗେଷ୍ଟ। ସକାଳ ନଅଟାରୁ ଉଠିବା ପରେ କଫି କପର ବରାଦ ଆସିବ। କେତେବେଳେ ଶୋଇ କେତେବେଳେ ବସି କଫି ପିଇ ଏଗାରଟା ବେଳକୁ ଅଫିସ୍ ଯିବ। ବ୍ରେକ୍ ଫାଷ୍ଟ ତାଙ୍କର ଇଚ୍ଛା ଉପରେ ନିର୍ଭର କରେ। ଲଞ୍ଚ-ଖାଆନ୍ତି କି ନାହିଁ ସେ କଥା ସେ ଜାଣନ୍ତି, ତାଙ୍କୁ କେହି ପଚାରିଲେ ସେ ଭାବନ୍ତି, ଏପରି ପଚାରିବାଟା ତାଙ୍କର ନିଜସ୍ୱ ଅଧିକାରରେ ହସ୍ତକ୍ଷେପ କରିବା। ଅଫିସରୁ ଫେରିବା ତାଙ୍କ ହାତରେ। ମାସକ ତିରିଶ ଦିନରୁ ପଚିଶ ଦିନ କେଉଁ ସାଙ୍ଗର ବାହାଘର, ନହେଲେ କାହା ଭଉଣୀ ବାହାଘର, ନହେଲେ ସାଙ୍ଗର ଶାଳୀର ବାହାଘର, କିଛି ନ ହେଲେ ସାଙ୍ଗ ସ୍ତ୍ରୀ, ଭଉଣୀମାନଙ୍କ ନୃତ୍ୟ ପ୍ରଦର୍ଶନ ଇତ୍ୟାଦି ଇତ୍ୟାଦିରେ କଟେ ମାତ୍ର ନିଜର ବିବାହ କଥା ପଡ଼ିଲେ ପ୍ରଥମେ କହିବେ ମୋର ବର୍ତ୍ତମାନ ବାହା ହେବାକୁ ଇଚ୍ଛା ହେଉନି। ଦ୍ୱିତୀୟରେ କହିବେ ମୋ ଭଉଣୀ ବାହା ହେଲା ପରେ ବାହା ହେବି। ମୋର ବୟସ କ'ଣ ଚାଲି ଯାଉଛି। ଅବଶ୍ୟ ବର୍ତ୍ତମାନ ବୟସ ବତିଶ ପୂରି ତେତିଶ ଚାଲିଲାଣି। ତାଙ୍କ ମତରେ ତାଙ୍କ ବିବାହ ବୟସ ହୋଇନି। ଦେହର ଥରାଟା ଟିକିଏ କମି ଆସିଲା ପରି ହରେକୃଷ୍ଣ ଅନୁଭବ କଲେ। ଭାବିଲେ ଆଖିଟା ବୁଜି ଦେଲେ ନିଦ ଆସିଯିବ। ମୁହଁ ଉପରକୁ ଧଳା ଚଦରଟା ଟାଣି ଆଣିଲା ପରେ ତାଙ୍କ ଅବୁଝା ମନଟା ସେଇ କାଶ୍ମୀର ପଣ୍ଡିତ ପରିବାରଙ୍କ ଧାଡ଼ି ହୋଇ ଧଳା ଚଦର ଘୋଡ଼ା ମଡ଼ା ଆଡ଼େ ଚାଲିଗଲା। ସେ ତତ୍କ୍ଷଣାତ ମୁହଁ ଉପରୁ ଧଳା ଚଦରଟା କାଢ଼ି ପୁଣି ଗୋଡ଼ ତଳକୁ ଫୋପାଡ଼ି ଦେଲେ।

ଖାଲି ଛାତି ଉପରେ ଗାମୁଛା ଖଣ୍ଡିକୁ ପକାଇ ଦେଇ ସେ ଶୋଇବାକୁ ଚେଷ୍ଟା କଲେ। ଆଖିବୁଜି ଦେଲେ ସତ ମାତ୍ର ମାନସ ପଟରେ ଦେଖିଲେ, ସତେ ଯେପରି ପୀତବାସ ମିଶ୍ର ଆସି ତାଙ୍କ ଆଗରେ ଠିଆ ହୋଇଛନ୍ତି। ମାତ୍ର ମନ ଭିତରୁ ପୀତବାସର ଭୂତକୁ ଘଉଡ଼େଇ ଦେବା ପାଇଁ ସେ ନିଜ ଭିତରକୁ ଫେରି ଆସି ଝିଅ ବାହାଘର କଥା ମନେ ପକାଇଲେ। ବୟସ ବଢ଼ିବାରେ ଲାଗିଛି। ସେ ଯେ ଚେଷ୍ଟା କରି ନାହାନ୍ତି ଏକଥା ନୁହଁ ମାତ୍ର ପୁଣି ସେଇ ଅଧିକାର। ଝିଅର ନିଜସ୍ୱ ଅଧିକାର ଭିତରେ ହସ୍ତକ୍ଷେପ କରିବାର ନାହିଁ ଏକଥା ଝିଅ ତାଙ୍କୁ ଭଲ ଭାବରେ ବୁଝାଇ ଦେଇଥିଲେ। ଆମେରିକାରୁ ବ୍ରତୋପନୟନ ପାଇଁ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରିଥିବା ତାଙ୍କ ବଡ଼ ଶାଳୀଙ୍କ ଏକମାତ୍ର ଶୋଳ

ବର୍ଷୀୟ ପୁତ୍ର ବ୍ରତୋପନୟନ ସମ୍ବନ୍ଧୀୟ ସମସ୍ତ କାର୍ଯ୍ୟ ଆଠ ଦିନ ମଧ୍ୟରେ ଶେଷ କରିବାକୁ ପିତାମାତାଙ୍କୁ ଧମକ ଦେଇ କହିଥିଲା, ଇଣ୍ଡିଆରୁ ଆଠ ଦିନ ମଧ୍ୟରେ ନ ଫେରିଲେ ସେମାନେ ତାଙ୍କୁ ନିର୍ଯାତନା ଦେବା ଅଭିଯୋଗରେ ତାଙ୍କ ବିରୋଧରେ ମକଦ୍ଦମା କରିବ। ସାରା ବିଶ୍ୱରେ ବର୍ତ୍ତମାନ ଅଧିକାରର ସ୍ଲୋଗାନ ଚାଲିଛି। ମହିଳାମାନଙ୍କ ଅଧିକାର, ଶିଶୁମାନଙ୍କ ଅଧିକାର, ଯୁବକମାନଙ୍କ ଅଧିକାର, ଲେବରମାନଙ୍କ ଅଧିକାର - ଅଧିକାର କେବଳ ଅଧିକାର - କର୍ତ୍ତବ୍ୟ କଥା ଛାଡ଼। ହରେକୃଷ୍ଣ ଭାବୁଥିଲେ ଏ ଯୁଗରେ ଗୋଟିଏ ପିଲାକୁ ମଣିଷଟିଏ କରିବାରେ ବାପ,ମାଆ କି ପ୍ରକାର କଷ୍ଟ ସ୍ୱୀକାର କରିଥାନ୍ତି, ସେ କଥା ସେମାନେ ହିଁ ବୁଝନ୍ତି। ମାତ୍ର ପିଲାମାନଙ୍କ ଡେଣା ଲାଗିଲା ପରେ ସେମାନେ ଭାବନ୍ତି ବାପା-ମାଆ, ତାଙ୍କର କର୍ତ୍ତବ୍ୟ କେବଳ କରିଛନ୍ତି। ଆଉ ଅଧିକାଟା କ'ଣ କରି ପକାଇଛନ୍ତି କି ? ପିଲା ଜନ୍ମ କରିଥିଲେ, ପାଠ ପଢ଼ାଇ ନ ଥାନ୍ତେ ନା ଖାଇବା ପିଇବାକୁ ଦେଇ ବଢ଼ାଇ ନ ଥାନ୍ତେ? କ'ଣ ଗୋଟେ ବଡ଼ କାମ କରି ଦେଲେ। ସତ କଥା କ'ଣ ଆଉ ବଡ଼ କାମଟେ କରିଥାନ୍ତେ ? ଠିକ୍ ଅଛି ଆମେ ଆମ କର୍ତ୍ତବ୍ୟ କଲୁ, ସେମାନଙ୍କର ଆମ ପ୍ରତି କ'ଣ କିଛି କର୍ତ୍ତବ୍ୟ ନାହିଁ, କର୍ତ୍ତବ୍ୟଟା କ'ଣ ଏକ ପାଖିଆ। ହରେକୃଷ୍ଣ, ଭାବିଥିଲେ, ଅବସର ନେବା ପୂର୍ବରୁ ଦୁଇଟା ଦାୟୀତ୍ୱ ସାରିଦେଲା ପରେ ସେ ନିଜେ ଟିକିଏ ନିଶ୍ଚିନ୍ତରେ ସମୟ କଟାଇବେ, ମାତ୍ର ତା' ଏ ଦୁହେଁ କରାଇ ଦେଲେ ନି। ଏବେ ବି କରାଇ ଦେବାକୁ ଚାହୁଁନାହାନ୍ତି। ନିଜ ନିଜ ଜିଦ୍‌ରେ ସେମାନେ ଅଟଳ ମହାମେରୁ। ହରେକୃଷ୍ଣ ଭାବୁଥିଲେ- ସତେ ଯେପରି ଏମାନେ ଶତ୍ରୁପରି ତାଙ୍କ ଉପରେ ପ୍ରତିଶୋଧ ନେଉଛନ୍ତି। ହୋଇପାରେ, ଝିଅ ଯେଉଁଠି ଚାହୁଁଥିଲା ବାହା ହେବାକୁ ତାଙ୍କ ସ୍ତ୍ରୀଙ୍କ ମନକୁ ନଗଲାରୁ, ସେ ସେଠି ରାଜି ହେଲେନି। ହରେକୃଷ୍ଣ କିନ୍ତୁ ମନା କରି ନ ଥିଲେ ବରଂ କହିଥିଲେ ଠିକ୍ ଅଛି, ମୁଁ ରାଜି ମାତ୍ର ପୁଅଘର ରାଜି ନ ହେବାରୁ ସେଠାରେ ବାହାଘର ହୋଇ ପାରିଲା ନାହିଁ। ସେଥିପାଇଁ କ'ଣ ହରେକୃଷ୍ଣ ଦାୟୀ ନା ତାଙ୍କ କର୍ତ୍ତବ୍ୟରେ ସେ ଅବହେଳା କରିଛନ୍ତି, ଯେଉଁଥି ପାଇଁ ଝିଅ ମୁହଁ ମୋଡ଼ି ବସିଛି। ପୁଅ କଥା ଛାଡ଼। ବିଶ୍ୱବିଦ୍ୟାଳୟ ଟପର ହେଲା- ଦିଲ୍ଲୀରେ ପଢ଼ିଲା, ଆଇ.ଏ.ଏସ୍. ପରୀକ୍ଷା ଦେଲା ନ ପାଇଲା ଏଥିପାଇଁ କ'ଣ ହରେକୃଷ୍ଣ ଦାୟୀ।

ଦେହଟା ଗରମ ହୋଇ ଉଠିଥିବା ବେଳେ ମୁଣ୍ଡ ଉପରେ ଘୂରୁଥିବା ଫ୍ୟାନଟାର ସ୍ପିଡ୍ ହଠାତ୍ କମିଗଲା। ଭୋଲଟେଜ୍ ଡାଉନ୍। ସେସ୍କୋ, ଗ୍ରିଡ୍‌କୋ ମଧ୍ୟରେ ଟଣାଟଣି। କିଏ କାହା ପଇସା ଆଗ ଦେବ, ଖାଉଟି ହଇରାଣ ହୁଅନ୍ତୁ, ସେଥିରେ କାହାର ଯାଏ ଆସେ? ଖରାଦିନେ ସହରରେ ଦିନକୁ ଦୁଇ ଘଣ୍ଟା ବିଜୁଳି କାଟ୍, ମଫସଲର କଥା ଛାଡ଼। ଫ୍ୟାନ ଆସ୍ତେ ଆସ୍ତେ ବନ୍ଦ ହୋଇଗଲା। ଖଟ ଉପରେ ତାଙ୍କ ଦେହରୁ ଗମ୍ ଗମ୍ ଝାଳ ବାହାରିଗଲା। ଗରମ ସାଙ୍ଗକୁ ମଶାଙ୍କ ସୁମଧୁର ସ୍ୱର ଆରମ୍ଭ ହୋଇଗଲା। କଟକ ଭୁବନେଶ୍ୱରରେ ମଶାଙ୍କ କଥା ଛାଡ଼। ସହରର ମେୟରମାନେ ଏପରି ଜନହିତକର କାର୍ଯ୍ୟ କଲେ ଯେ, ତାଙ୍କ କାର୍ଯ୍ୟକାଳ ପୂରିବା ଆଗରୁ ସେମାନଙ୍କୁ ବହିଷ୍କାର କରାଗଲା। ସରକାର ମହାନଗର ନିଗମଗୁଡ଼ିକୁ ହାତକୁ ନେଲେ, ହେଲେ ମଶା ଡାଆଁଶ ବଢ଼ିଲେ ସିନା କମିଲେନି। ଏବେ ସହରର ରାସ୍ତାଘାଟ ଅବସ୍ଥା କଥା ଛାଡ଼, ମେଲେରିଆ ଏପରି ଭାବେ ବ୍ୟାପିଲାଣି ଯେ, ସରକାର ଟି.ଭି.ରେ ବିଜ୍ଞାପନ ଦେଇ କହୁଛନ୍ତି ଜ୍ୱର... କମ୍ପ ଆସୁଛି, ତାତି ବଢୁଛି, ସାଥି ସାଥି କ୍ୟୁଇନାଇନ୍ ବଟିକା ଖାଅ, ମେଲେରିଆ ପାଇଁ ରକ୍ତ ପରୀକ୍ଷା କର। ବିଜ୍ଞାପନରୁ ସରକାରଙ୍କ କାର୍ଯ୍ୟଦକ୍ଷତା ଜଣାପଡ଼େ। ଗରମ ଅସହ୍ୟ ହେବାରୁ ହରେକୃଷ୍ଣ ଖଟରୁ ଉଠିପଡ଼ି ଅଭ୍ୟାସ ବଶତଃ ବେଡ୍ ଲାଇଟର ସୁଇଚ୍ ଟିପିଲେ। ପରେ ନିଜର ଭୁଲ ବୁଝିପାରି ଖଟ ଉପରୁ ଓହ୍ଲାଇ ଆସ୍ତେ ଆସ୍ତେ କବାଟ ଖୋଲି ବାହାରପଟ ବାରଣ୍ଡାରେ ପଡ଼ିଥିବା ଚେୟାର ଉପରେ ବସି ପଡ଼ିଲେ। ଅବଶ୍ୟ ମଶାମାନେ ତାଙ୍କ ପିଛା ଧରିଥାନ୍ତି। ଗାମୁଛା ଖଣ୍ଡିକରେ ସେମାନଙ୍କୁ ଘଉଡ଼ାଇ ଦେବା ବେଳେ ହରେକୃଷ୍ଣ ବାହାର ବାରଣ୍ଡା ଉପରୁ ରାସ୍ତାକୁ ଚାହିଁଲେ। ଚାରିଆଡ଼େ ଶୁନଶାନ। ମଝିରେ ମଝିରେ ବୁଲା କୁକୁରମାନଙ୍କ ଆହ୍ୱାନ ଏବଂ ପ୍ରତି ଆହ୍ୱାନର ସ୍ୱର ନିର୍ଜନ, ନିଶୂନ ରାତିରେ ତାଙ୍କୁ କେମିତି ଭଲ ଲାଗିଲା। ଚାରିଟା କୁକୁର ଖଣ୍ଡେ ଦୂରରେ ଠିଆ ହୋଇ ଭୁକୁଥିଲା ବେଳେ ଆଉ ଚାରି ଛଅଟା କିଛି ଦୂରେ ଠିଆ ହୋଇ ତାଙ୍କ ଆଡ଼କୁ ମୁହଁ କରି ଭୁକୁଥାନ୍ତି। ସତେ ଯେପରି ଦୁଇ ଦଳ ପରସ୍ପର ବିରୋଧି ସ୍ଲୋଗାନ ଦେବାପାଇଁ ପ୍ରସ୍ତୁତ ହୋଇ ରାତ୍ରୀର ନିର୍ଜନତାକୁ ବେଖାତିର କରି ନିଜର କର୍ତ୍ତବ୍ୟ ସମ୍ପାଦନ କରୁଛନ୍ତି। ଦି ମହଲା ଉପର ବାରଣ୍ଡାରୁ ତାରକା ଆଲୋକରେ ଆଲୋକିତ ରାସ୍ତା ଉପରେ ରଡ଼ି କରୁଥିବା ଏହି ଦୁଇ ଦଳ

କୁକୁରଙ୍କ ଉପରେ ହରେକୃଷ୍ଣ ଆଖି ବୁଲାଇ ଆଣିଲା ବେଳେ ଭାବୁଥିଲେ ଠିକ୍ ଅଛି - ଏ ଯୁଗକୁ ଚାହିଁ ଆମର ବୁଲା କୁକୁର ଦଳ ଠିକ୍ କର୍ତ୍ତବ୍ୟ ପାଳନ କରୁଛନ୍ତି। ଚୋରମାନେ ଗଳିବାଟେ ଯାଆନ୍ତୁ, ସେମାନଙ୍କ ଉପରେ ତାଙ୍କର ନଜର ନାହିଁ। ନିଜ ନିଜ ଭିତରେ କେବଳ ଆହ୍ୱାନ ଆଉ ପ୍ରତି ଆହ୍ୱାନ। ସନ୍ଧ୍ୟାବେଳେ ସେ ଟି.ଭି.ରେ ଦେଖିଥିଲେ ଦେଶର ବିଧାନସଭା, ସଂସଦ ଭବନରେ ଆମ ଲୋକପ୍ରତିନିଧିମାନେ କିପରି ନିଜ ନିଜ ମଧ୍ୟରେ ଆହ୍ୱାନ ପ୍ରତି ଆହ୍ୱାନରେ ଘଣ୍ଟା ଘଣ୍ଟା ସମୟ ନଷ୍ଟ କରୁଛନ୍ତି। ଦେଶର ଜନତା ସେମାନଙ୍କୁ ଭୋଟ ଦେଇ ନିର୍ବାଚିତ କରିଥିଲେ, ଦେଶ ଓ ଜନତାର ଉନ୍ନତି କଳ୍ପେ କାର୍ଯ୍ୟ କରିବା ପାଇଁ କିନ୍ତୁ ଥରେ ଭୋଟରେ ଜିତିଗଲା ପରେ ଜନତାଙ୍କୁ ପଚାରେ କିଏ ?

ବିଧାୟକ ହେଲେ, ସାଂସଦ ହେଲେ, ତା' ପରେ ମନ୍ତ୍ରୀ ହେଲେ, ବିଭିନ୍ନ ଉଦ୍ୟୋଗର ଅଧ୍ୟକ୍ଷ, ମାଗଣାରେ ଘର, ଟେଲିଫୋନ୍, ଜୀବନଯାକ ମାଗଣାରେ ଟ୍ରେନ୍ ଯାତ୍ରା, ବିମାନ ଯାତ୍ରା, ରିହାତି ମୂଲ୍ୟରେ ଆଉ କିଛି ଏସବୁ ଛଡ଼ା ପ୍ରତ୍ୟେକ ବର୍ଷ ସାଂସଦ ପାଣ୍ଠି. ଏମ୍.ଏଲ.ଏ ପାଣ୍ଠି ପାଇଁ ଦୁଇ କୋଟି ଟଙ୍କା, ଏଇ ଟଙ୍କାରୁ ପରସେଣ୍ଟେଜ୍ ତା' ପରେ ପୁଅ, ଝିଅ, ସ୍ତ୍ରୀଙ୍କ ପାଇଁ ଟିକେଟ ଯୋଗାଡ଼। ପ୍ରଥମେ ନିଜ ସ୍ଥିତିକୁ ଦୃଢ଼କରିବା ଦେଶସେବାକୁ ମାର ଗୁଲି। ସତେ ଯେପରି ସାମ୍ବିଧାନିକ କକ୍ଷଗୁଡ଼ିକରେ ଠିଆହୋଇ ଆହ୍ୱାନ ପ୍ରତିଆହ୍ୱାନ ଦେଇ ଜନତାଙ୍କ ସେବାର ପରାକାଷ୍ଠା ପ୍ରଦର୍ଶନ କରିବା ହେଲା ଏମାନଙ୍କର କର୍ତ୍ତବ୍ୟ। ଆକାଶରେ ଅଦିନିଆ ମେଘ ତଳେ ତା'ରାଗୁଡ଼ାକ ଲୁଚିଯିବାରେ ରାସ୍ତାଟା ଟିକେ ଅଧିକ ଅନ୍ଧାର ହୋଇଗଲା। ହଠାତ ଦୁଇ ଦଳ କୁକୁରଙ୍କ ରଡ଼ି ମଧ୍ୟ ବନ୍ଦ ହୋଇଗଲା। ହରେକୃଷ୍ଣ ଦେଖିଲେ, ଦୁଇ ଦଳ କୁକୁରଙ୍କ ମଧ୍ୟରେ ସାଲିସ ହୋଇ ଯାଇଛି। ଅଳ୍ପ ସମୟ ଆଗରୁ ଯେଉଁମାନଙ୍କ ରଡ଼ିରେ ରାସ୍ତା କମ୍ପୁଥିଲା, ଏବେ ସେମାନେ ଏକାଠି ହୋଇ ମିଳିମିଶି ରାସ୍ତାକଡ଼ରେ ଜମା ହୋଇଥିବା ଗାରବେଜ ପାଖରେ ସାଙ୍ଗ ସୁଖ ହୋଇ ଖାଇବାରେ ଲାଗିଛନ୍ତି। ଆଉ ପାଟି ନାହିଁ କି ତୁଣ୍ଡ ନାହିଁ। ଯାହା ହେଉ- ସୁବିଧା ପାଇବା ପାଇଁ ସମସ୍ତେ ଏକାଠି। ସୁବିଧା ଆଗରେ ଆଉ ପାଟି ତୁଣ୍ଡ କିମ୍ବା ଆହ୍ୱାନ ପ୍ରତି ଆହ୍ୱାନ ଦରକାର ପଡ଼େନି। ତା' ନ ହୋଇଥିଲେ ସୁପ୍ରିମକୋର୍ଟର ନିର୍ଦ୍ଦେଶ ପରେ ଆମ

ନେତାମାନେ ସେମାନଙ୍କ ସୁବିଧା ପାଇଁ ସର୍ବଦଳୀୟ ବୈଠକରେ ସୁପ୍ରିମକୋର୍ଟ ନିର୍ଦ୍ଦେଶକୁ ଏଡ଼ାଇ ଦେଇ ନ ଥାନ୍ତେ।

ହରେକୃଷ୍ଣ ନିଜ ମନ ଉପରେ ବିରକ୍ତ ହୋଇ ଉଠିଲେ। କେଉଁ ରାସ୍ତା ଉପରେ ଦୁଇ ଦଳ କୁକୁର- କେଉଁଠି ସାଂସଦ ଭବନ-ରାମିଆ ଭଣ୍ଡାରି ଆଉ ରାମଚନ୍ଦ୍ର ମହାପ୍ରଭୁ। ଧନ୍ୟ ଏ ଅବୋଲକରା ମନ, କେତେବେଳେ କୁଆଡ଼କୁ ମାଡ଼ି ଯାଉଛି ତା'ର କିଛି ବାଡ଼ ବତା ନାହିଁ। ରାସ୍ତା କୋଣରେ ଦୁଇ ଦଳ କୁକୁର ଏକାଠି ଭୋଜନ କଲାବେଳେ ବୁଲା ଷଣ୍ଢର ଅନୁପ୍ରବେଶକୁ ପ୍ରତିହତ କରିବାକୁ ବାହାରି ରଡ଼ି ଆରମ୍ଭ କରି ଦେଇଥାନ୍ତି। ହରେକୃଷ୍ଣ ବିରକ୍ତ ହୋଇ ପୁଣି ଖଟ ଉପରକୁ ଫେରିଲେ। ସେପର୍ଯ୍ୟନ୍ତ ବିଜୁଳି ବତି ଆସି ନ ଥାଏ। ଏଣେ ଆଖିଟା ମାଡ଼ି ମାଡ଼ି ପଡ଼ିଲାଣି। ଖଟ ଉପରେ ପଡ଼ି ଭାବିଲା ବେଳେ ଲାଇନ୍ ଆସିଗଲାରୁ ଫ୍ୟାନଟା ଅସମ୍ଭବ ଜୋର୍‌ରେ ବୁଲିବାକୁ ଲାଗିଲା। ଅଧିକ ଭୋଲଟେଜ-ଠିକ୍ ଅଛି। ଧଳା ଚଦରଟିକୁ ଦେହ ଉପରକୁ ଟାଣିଆଣିଲେ ହରେକୃଷ୍ଣ।

ସେ ଦିନ ରାତ୍ରୀରେ ହରେକୃଷ୍ଣ ସ୍ୱପ୍ନ ଦେଖିଥିଲେ। ସ୍ୱପ୍ନରେ ସେ ଦେଖୁଥିଲେ ତାଙ୍କ ଚାରିପଟେ ଚଦର ପରିହିତ ଶହ ଶହ ଲୋକ ନୃତ୍ୟ କରୁଛନ୍ତି - ହରେକୃଷ୍ଣଙ୍କୁ ତାଙ୍କ ସହ ନୃତ୍ୟ କରିବାକୁ ଆହ୍ୱାନ ଦେଉଛନ୍ତି। ସେମାନଙ୍କ ମଧ୍ୟରୁ କେତେଜଣ ତାଙ୍କୁ ଟାଣି ନେବାକୁ ବସିଲା ବେଳେ ହରେକୃଷ୍ଣଙ୍କ ପାଟି ଖନି ମାରିଗଲା - ଭୟରେ ପାଟି କରୁଥାନ୍ତି - ପୀତ-ପୀତବାସ...। କାହାର ପାଟିରେ ହଠାତ୍ ତାଙ୍କ ନିଦ ଭାଙ୍ଗି ଗଲା। ହରେକୃଷ୍ଣ ଦେଖିଲେ, ତାଙ୍କ ସ୍ତ୍ରୀ ଖଟ ପାଖରେ ହାତରେ ଖଣ୍ଡେ ଛାଞ୍ଚୁଣି ଧରି ଠିଆ ହୋଇ ବଡ଼ ପାଟିରେ କହୁଥାନ୍ତି 'ସକାଳ ହେଲାଣି - ଖଟଟା ଉପରେ ପଡ଼ି ଘୁଷୁରି ପରି ଗଁ ଗଁ ହଉଛ'। ପାଟିଟେ କରିଦେଇ ସେ ଘର ଓଳାଇବାରେ ବ୍ୟସ୍ତ ରହିଲେ। ହରେକୃଷ୍ଣ କାନ୍ଥ ଘଣ୍ଟାକୁ ଚାହିଁ ଦେଖିଲେ ସକାଳ ଛଅଟା ପନ୍ଦର ମିନିଟ୍।

—୦O୦—

# ପ୍ରେତ ପୂଜା

୧୯୯୯ ମସିହା ଅକ୍ଟୋବର ମାସ ଶୁକ୍ରବାର ୨୯ ତା'ରିଖ ସକାଳ ଦଶଟା। ପୁଲିସ୍ ହେଡ୍‌କ୍ୱାର୍ଟରରୁ ଖବର ଆସିଲା ଡି.ଜି.ପିଙ୍କୁ ଦେଖାକରିବା ପାଇଁ। ସେଦିନ ସକାଳ ଆଠଟା ବେଳକୁ ପବନ ବହିବା ଆରମ୍ଭ ହୋଇ ଯାଇଥାଏ। ଘରୁ ବ୍ରେକଫାଷ୍ଟ ଖାଇସାରି, ସିଧା ଡି.ଜି ସାହେବଙ୍କୁ ଦେଖା କରିବାକୁ ଗଲାବେଳେ, ବାରବାଟୀ ଷ୍ଟାଡ଼ିୟମ ଗାନ୍ଧି ଗେଟ୍ ସାମ୍ନାରେ ଥିବା ଗୋଟେ ପୁରୁଣା ବରଗଛ ଉପୁଡ଼ି ପଡ଼ିଲା। ମୋ ଗାଡ଼ି ପ୍ରାୟ ଦୁଇଶହ ଗଜ ଦୂରରେ ଥିଲା। ସେ ରାସ୍ତାରେ ଯିବା ସମ୍ଭବ ନ ହେବାରୁ ବୁଲା ରାସ୍ତା ଦେଇ ଡି.ଜି.ଙ୍କ ଅଫିସରେ ପହଞ୍ଚିଲି। ସେତେବେଳକୁ ହେଡ୍‌କ୍ୱାର୍ଟରର କେତେଜଣ ଅଫିସର ଆସି ପହଞ୍ଚିଯାଇଥାନ୍ତି। ପବନର ଗତି ବଢ଼ିବାରେ ଲାଗିଥାଏ। ଓ୍ୱାରଲେସ୍‌ରୁ ଖବର ଆସିଲା ଯେ ବାଲିକୁଦା ଥାନା ଅନ୍ତର୍ଗତ ଅନନ୍ତପୁର ଫାଣ୍ଡିର ଛାତ ଉଡ଼ିଗଲାଣି। ସେଠାରେ ସର୍କଲ ଇନସ୍‌ପେକ୍ଟର ବାତ୍ୟା ପୂର୍ବରୁ ସତର୍କ କରାଇଦେବା ପାଇଁ ଯାଇ ସେଇଠି ଅଟକି ଯାଇଥାନ୍ତି। କିଛି ସମୟରେ ପୁଣି ଖବର ଆସିଲା ନିଆଳି ଥାନା ଛାତ ଉଡ଼ି ଗଲାଣି। ପାଖ ଗଛ ଭାଙ୍ଗି ପଡ଼ି ଛାତ କ'ଣା ହୋଇଗଲା। ଥାନାର କାଗଜପତ୍ର ଉଡ଼ିଗଲା। ପରେ ପରେ ନିଆଳି ଥାନାର ଓ୍ୱାରଲେସ୍ କମ୍ୟୁନିକେସନ କଟିଗଲା। ସେତିକି ବେଳକୁ ରାଜ୍ୟ ପୋଲିସ୍ ହେଡ୍‌କ୍ୱାର୍ଟର ଭିତରେ ଥିବା ଗୋଟିଏ ଶିମିଳି ଗଛ ଉପୁଡ଼ି ପଡ଼ି ଛାତରେ ଆଉଜି ଗଲାବେଳେ, ଆଇ.ଜି. ମିଷ୍ଟର ସେନାପତିଙ୍କ ଘରୁ ତାଙ୍କ ଝିଅ ଫୋନ୍ କରି ତାଙ୍କ ଘରପାଖ ଗଛର ଡାହି ଭାଙ୍ଗି କାନ୍ଥ ଭାଙ୍ଗି ଦେଲାଣି ବୋଲି ଖବର ଦେଲା।

ଡି.ଜି. ମୋତେ କହିଲେ ଖାଇସାରି ଜଗତ୍‌ସିଂହପୁର ଆଡ଼େ ଯିବାପାଇଁ, ବାତ୍ୟାର ପ୍ରକୋପ ସେତେବେଳକୁ ଜଣା ପଡ଼ି ନ ଥାଏ। ଆମେ ଭାବିଥିଲୁ ଦିନ ୨ଟା ସୁଦ୍ଧା ପବନର ଗତି କମିଯିବ, ତେଣୁ ପାରାଦ୍ୱୀପ, ଜଗତ୍‌ସିଂହପୁର ଆଡ଼େ ବୁଲି ଆସିଲେ ଯଦି କିଛି ଦରକାର ଥିବ ତାହା ହେଲେ ସାହାଯ୍ୟ କାର୍ଯ୍ୟ

ଆରମ୍ଭ କରିବାକୁ ହେବ। ଡି.ଜି.ଙ୍କ ଅଫିସ୍‌ରୁ ବାହାରିଲା ବେଳକୁ ଦିନ ୧୧ଟା। ସେତେବେଳକୁ ଟେଲିଫୋନ୍ ଲାଇନ୍ ଥିଲେ ମଧ୍ୟ ଓୟାରଲେସ୍ କମ୍ୟୁନିକେସନ କଟିଯାଇଥାଏ। ଜଗତ୍‌ସିଂହପୁର ଯିବା ଲାଗି ମୁଁ ସିଧା ଘରକୁ ଆସିଲା ପରେ ଦେଖିଲି ପବନର ଗତି ବଢ଼ିବାରେ ଲାଗିଲା। ପ୍ରାୟ ସାଢ଼େ ବାରଟା ବେଳକୁ ମୋ ସରକାରୀ କ୍ୱାର୍ଟରର ରୋଷେଇ ଘରକୁ ଲାଗିଥିବା ଆମ୍ବଗଛ ଉପୁଡ଼ି ପଡ଼ି ମୋ ପଡ଼ିଶା ରାଉତ ବାବୁଙ୍କ ଘର ଉପରେ ପଡ଼ିଲା। ଗଛ ଉପୁଡ଼ିବାର ସମ୍ଭାବନା ଦେଖି ତାଙ୍କୁ ଆଗରୁ ଖବର ଦେଇଥିଲି। ତେଣୁ ସେମାନେ ସେ ରୁମ୍ ଛାଡ଼ି ଦେଇ ଚାଲିଯାଇ ଥିଲେ। ପବନର ଗତି ଭୀଷଣ ଭାବେ ବଢ଼ିବାକୁ ଲାଗିଲା। ସାଙ୍ଗରେ ପ୍ରବଳ ବର୍ଷା। ତୋଫାନରେ ମୋ ଅଗଣା ଭିତରେ ଥିବା ଗୋଟେ ଆମ୍ବ ଗଛ ଉପୁଡ଼ି ପଡ଼ି ରୋଷେଇ ଘର, ଗାଈ ଗୁହାଳ ଭାଙ୍ଗି ଦେଲା। ସେତେବେଳକୁ କଟକ ଇନ୍‌ଡୋର ଷ୍ଟାଡ଼ିୟମ୍‌ର ଟିଣମାନ ଆକାଶରେ ଉଡୁଥିବା ବେଳେ, ବାରବାଟୀ ଷ୍ଟାଡ଼ିୟମ୍‌ର ଟିଣ ଗ୍ୟାଲେରୀ ଉଠୁଥାଏ ପଡୁଥାଏ। ବାହାରପଟ ଦରଜା ଖୋଲି ପିଣ୍ଡାକୁ ଯିବାକୁ ଡର ଲାଗୁଥାଏ କାରଣ ଷ୍ଟାଡ଼ିୟମ୍ ଭିତରର ନଡ଼ିଆଗଛ ଗୋଟାକ ପରେ ଗୋଟେ ଉପୁଡ଼ି ପଡ଼ି ରାସ୍ତା ଏବଂ ଘର ବାଉଣ୍ଡାରି କାନ୍ଥ ଉପରେ ପଡୁଥାଏ। ଚାରିଟା ବେଳକୁ ବିଜୁଳି ଲାଇନ୍ କାଟିବା ସଙ୍ଗେ ସଙ୍ଗେ ଟେଲିଫୋନ୍ ଲାଇନ୍ କଟିଗଲା। ବର୍ଷା-ତୋଫାନ୍‌ର ଗତି ବଢ଼ି ଚାରିଆଡ଼େ କେବଳ ସୁଉ ସୁଉ ଶବ୍ଦ ଶୁଭୁଥାଏ। ପଶ୍ଚିମ ପଟ ବେହେରା ମଉସାଙ୍କ ବିରାଟ ଶିମିଳି ଗଛ ଖୁବ୍ ଜୋରରେ ଦୋହଲିବାକୁ ଲାଗିଲା। ପ୍ରାୟ ୨୦୦ ଫୁଟ ଲମ୍ବର ଏହି ବିରାଟ ଶିମିଳି ଗଛକୁ ପବନ ଦୋହଲାଇଲା ବେଳେ ଘର ଭିତରେ ଥାଇ ଆମେ ତିନିଜଣ, କୁକୁର ଦୁଇଟି, ଗାଈ ଦୁଇଟି ପ୍ରମାଦ ଗଣିଲୁ। ଗଛ ଘର ଉପରେ ପଡ଼ିଲେ, ଘର କାନ୍ଥ ଭାଙ୍ଗି ନିଶ୍ଚୟ କାନ୍ଥ ତଳେ ଚାପି ହେବୁ। ମୁଁ ଦେଖୁଥାଏ - ପବନର ଗତି ଟିକିଏ ବଦଳିଲା ଏବଂ ତା'ରି ଭିତରେ ଶିମିଳି ଗଛ ଉପୁଡ଼ି ପଡ଼ି, ମୋର ସରଭାଣ୍ଟ କ୍ୱାର୍ଟର ସହ ଅନ୍ୟଘର ଭାଙ୍ଗିଦେଲା।

ପରେ ପରେ ଭୀଷଣ ବର୍ଷା। ଆସ୍ତେ ଆସ୍ତେ ଅନ୍ଧାର ମାଡ଼ି ଆସିଲା। ଚାରିଆଡ଼େ ଶୁନ୍‌ଶାନ୍। ପବନର ସୁ ସୁ ଗର୍ଜନ। ଗଛ ଭାଙ୍ଗିବାର ମଡ଼ ମଡ଼ ଶବ୍ଦ। ଆଉ କିଛି ଶୁଭୁ ନ ଥାଏ। ବାହାର ଦରଜା ଖୋଲି ବାହାରକୁ ଯିବା

ସମ୍ଭବ ନୁହେଁ। ଘରେ ଦୁଇଟି ମହମବତୀ ଜାଳି ବସିଲୁ। ରାତି ବଢ଼ିବା ସଙ୍ଗେ ସଙ୍ଗେ ପବନର ଶବ୍ଦ ଭୟଙ୍କର ହୋଇ ଉଠୁଥାଏ। ରୋଷେଇ କରିବା ତ ଦୂରର କଥା ପାଣି ମୁନ୍ଦାଏ ପିଇବା ପାଇଁ ମିଳିଲାନି। କାହାକୁ ଡାକିବା କି କାହାର ସାହାଯ୍ୟ ନେବା ସମ୍ଭବ ନ ଥାଏ। ପ୍ରାୟ ରାତି ବାରଟା ବେଳକୁ ଦେଖିଲୁ ପବନ କମିଲାନି ବର୍ଷା ତୋଫାନ ବଢ଼ିଚାଲିଲା। ଘର ଛାତରୁ ପାଣି ଗଳି ଘର ଓଦା- ଶୋଇବା ପ୍ରଶ୍ନ ଉଠୁନି। କେମିତି ଏ କାଳ ରାତ୍ରୀ ପାହିବ। ଗୋଟିଏ ଯାଗାରେ ବସିଥାଉ। ରାତ୍ରୀ ପ୍ରାୟ ୩ଟା ବେଳକୁ ପବନ କମିଲା। ମାତ୍ର ବର୍ଷା ଚାଲିଥାଏ। ଟିକିଏ ଆସ୍ୱସ୍ତ ହେଲୁ।

ଭୋର ବାହାର ଦରଜା ଖୋଲି ଦେଖିଲି- ଚାରିଆଡ଼େ ଗଛ ଭାଙ୍ଗି ପଡ଼ିଚି। ପାଣି ଘର ଭିତରେ, ଘର ବାହାରେ। ଗେଟ୍ ସାମ୍ନାରେ ବିରାଟ ବିରାଟ ଆମ୍ବ ଏବଂ ନଡ଼ିଆ ଗଛ ଉପୁଡ଼ି ହତା କାନ୍ଥ ଭାଙ୍ଗି ଦେଇ ଥାଏ। ହତା ବାହାରକୁ ବାହାରିବା କଷ୍ଟକର। ବହୁ କଷ୍ଟରେ ଭାଙ୍ଗି ପଡ଼ିଥିବା ଆମ୍ବ ଗଛ ଡାଳ ଟେକି, ଗେଟ ପାଖକୁ ଗଲି। ଗେଟ୍ ଉପରେ ଆମ୍ବ ଗଛର ଡାଳ ପଡ଼ିଥିବା ଯୋଗୁଁ ସେଠୁ ବାହାରକୁ ଯିବା ସମ୍ଭବ ନ ଥାଏ। ଘରୁ କଟୁରୀ ଧରି ଦିଖଣ୍ଡ ଡାହି ହାଣିଲା ପରେ ବାହାରକୁ ବାହାରି ଦେଖିଲି କାଣ୍ଟନମେଣ୍ଟ ଅଞ୍ଚଳରେ ବାତ୍ୟାର ଧ୍ୱଂସଲୀଳା। ପ୍ରାୟ ସବୁ ପୁରୁଣା ଗଛ ଉପୁଡ଼ି ପଡ଼ି ରାସ୍ତା ବନ୍ଦ। ଷ୍ଟାଡ଼ିୟମ୍‌ର ପ୍ରାୟ ସମସ୍ତ ନଡ଼ିଆ ଗଛ, ଆମ୍ବ ଗଛ, ବରଗଛ ଉପୁଡ଼ି ପଡ଼ି ଷ୍ଟାଡ଼ିୟମ୍ ପାଚେରୀ ଭାଙ୍ଗିଯାଇଥାଏ। ବାଲିଯାତ୍ରା ପଡ଼ିଆରେ ଦୁଇଫୁଟ୍ ଉଚ୍ଚର ପାଣି। ଭାଙ୍ଗି ପଡ଼ିଥିବା ଗଛକୁ ଡେଇଁ, ତଳେ ପଶି ମୋ ଘର ପାଖରୁ ପଡ଼ିଶା ଘର ପାଖକୁ ଆସିଲି। ତାଙ୍କ ଘର ଛାତସବୁ ଉଠିଯାଇଥାଏ। ଏତିକିବେଳେ ଡି.ଆଇ.ଜି ହରିହର ପଣ୍ଡା ସେପଟୁ ଆସିଲେ। ତାଙ୍କ ଘରର ଛାତ ନ ଥାଏ। କଥାବାର୍ତ୍ତା ହେଲା, ଡି.ଜି.ଙ୍କ ଘରକୁ ଯିବା। ଗଲୁ। ଇଣ୍ଡଷ୍ଟ୍ରି ଡାଇରେକ୍ଟୋରେଟ୍ ପାଖେ ବେକେ ପାଣି। ପାଣିକୁ ଡରି ହରିପଣ୍ଡା ଫେରିଗଲେ। ୟୁନିଭର୍ସ ମଧ୍ୟରେ ଅଣ୍ଟେ ପାଣି। ବେକେ ପାଣିରେ ପଶି ଡି.ଜି.ଙ୍କ ଘରେ ପହଞ୍ଚିଲା ବେଳକୁ ତାଙ୍କ ଘରର କାନ୍ଥ ଫାଳେ ଭାଙ୍ଗି 'ଯାଇଥାଏ। ସେ ବି ବାହାରେ ବସିଥାନ୍ତି। କିଛି ସମୟ କଥାହେଲା ପରେ ଜାଣିଲି ଯେ ଆଉ କୁଆଡୁ ଖବର ଆସୁନି। ମୋତେ

କୁହାଗଲା ଜଗତ୍‌ସିଂହପୁର ଯିବା ପାଇଁ। ମାତ୍ର ଚାରିଆଢ଼େ ପାଣି, ଗଛ ପଡ଼ି ରାସ୍ତା ଘାଟ ବନ୍ଦ। ଘରୁ ମଧ୍ୟ ଗାଡ଼ି ବାହାରକୁ ନେବାକୁ ବାଟ ନ ଥାଏ। ଘରେ କିରୋସିନି କିମ୍ବା ଲଣ୍ଠନ ଖଣ୍ଡେ ନ ଥିଲା। ବିଜୁଳି ଖୁଣ୍ଟ ଉପୁଡ଼ି ପଡ଼ିଥାଏ। ସମଗ୍ର ସହରରେ ବିଜୁଳି ନ ଥାଏ। ସେଦିନ ଆଉ ଜଗତ୍‌ସିଂହପୁର ଯାଇ ପାରିଲିନି। ଅକ୍ଟୋବର ୩୦ ତାରିଖ ଦିନ କଟକ ସହର ବାହାରକୁ ଯିବା ସମ୍ଭବ ହେଲାନି।

୩୧।୧୦।୧୯୯୯ ସକାଳୁ, କଟକ ରିଜର୍ଭ ଲାଇନ୍‌ରୁ ଗୋଟେ ଜିପ୍ କୌଣସି ମତେ ବାହାରି ବୁଲି ବୁଲି ଆସି କ୍ୟାଣ୍ଟନ୍‌ମେଣ୍ଟ ଥାନା ପାଖେ ପହଞ୍ଚି ପାରିଲା। ଦିନ ୧୦ଟା ବେଳକୁ ମୁଁ କଟକ ଛାଡ଼ିଲି। ସାଙ୍ଗରେ ୨ଜଣ ଏ.ପି.ଆର. କନେଷ୍ଟବଳ। ଜିପ୍‌ରେ ମହାନଦୀ ବ୍ରିଜ ପାରହୋଇ ଜଗତପୁରଠାରେ ପହଞ୍ଚିଲା ବେଳକୁ ଦେଖିଲି ଜଗତପୁର କୋଲଡ଼୍‌ଷ୍ଟୋରେଜ୍ ଭାଙ୍ଗି ଲୋକମାନେ ଆଳୁବସ୍ତା ଲୁଟ କରୁଥାନ୍ତି। ଜଗତପୁର ଥାନାର କେତେଜଣ କନେଷ୍ଟବଲ୍, ଜଣେ ପୋଲିସ୍ ଅଫିସର ଏସବୁକୁ ରୋକିବାକୁ ଚେଷ୍ଟାକଲେ ମାତ୍ର ଲୁଟତରାଜକୁ ରୋକି ପାରିଲେ ନାହିଁ। ପରେ ପରେ ଦେଖିଲି ଚିତ୍ରୋତ୍ପଳା ନଦୀ ବ୍ରିଜ୍ ଉପରେ ଲୋକମାନେ ଆଳୁ, ପିଆଜ, ଟ୍ରକ ଲୁଟି କରୁଥାନ୍ତି। ସେମାନଙ୍କ ମଧ୍ୟରେ ଗରୀବ କମ୍ ମାତ୍ର ଲୁଟେରା ବେଶି। ସମସ୍ତେ ବାତ୍ୟା ନାଁରେ ଟ୍ରକ ଲୁଟ୍ କରିବାରେ ବ୍ୟସ୍ତ। ଡ୍ରାଇଭର, କ୍ଲିନର ବା କ'ଣ କରନ୍ତେ। ଜଣେ ଅଧେ ପୁଲିସ୍ କନ୍‌ଷ୍ଟେବଲ ଗଲେ ଲୋକମାନେ ଟେକା ଫିଙ୍ଗୁଥାନ୍ତି। ବହୁତ କଷ୍ଟରେ ରାସ୍ତା ଉପରେ ଅଟକି ରହିଥିବା ଶହ ଶହ ଟ୍ରକ ପାରି ହୋଇ ଚଣ୍ଡିଖୋଲରେ ପହଞ୍ଚିଲା ବେଳକୁ ଦିନ ୩ଟା। କଟକରୁ ଚଣ୍ଡିଖୋଲ ଛକରେ ପହଞ୍ଚିବାକୁ ୮ ଘଣ୍ଟା ଲାଗିଗଲା। ଚଣ୍ଡିଖୋଲରୁ ଏକ୍‌ସପ୍ରେସ ହାଇୱେରେ ପାରାଦ୍ୱୀପ ଗଲି। ପାରାଦ୍ୱୀପରେ ପହଞ୍ଚିଲି ପ୍ରାୟ ସାଢ଼େ ଚାରିଟା ସମୟରେ। ଥାନା ବାରଣ୍ଡାରେ ବସିଥିଲେ ପାରାଦ୍ୱୀପ ଏସ.ଡି.ପି.ଓ. ଆଉ ଡି.ଆଇ.ଜି କେନ୍ଦ୍ରାଞ୍ଚଳ। ତାଙ୍କଠାରୁ ଖବର ମିଳିଲା ଯେ ପ୍ରାୟ ୩୦୦ ରୁ ଊର୍ଦ୍ଧ ଲୋକଙ୍କ ମଡ଼ା ପଡ଼ିଛି। ପାଣି ଘେରରେ ମଧୁବନ ଅଞ୍ଚଳ। କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହୋଇଛି। ସେ ପର୍ଯ୍ୟନ୍ତ ତଳ ଅଞ୍ଚଳରୁ କିଛି ଖବର ଆସି ନ ଥାଏ। କୁଜଙ୍ଗ, ଏରସମା, ବାଲିକୁଦା ଅଞ୍ଚଳର

ଖବର ଜଣାପଡୁ ନ ଥାଏ। ଗୋଟେ ଗୋଟେ ଥାନାର ବେତାର କେନ୍ଦ୍ର ଠିକ୍ ହେବାରୁ କେବଳ ଥାନାମାନଙ୍କର ଅବସ୍ଥା ଜଣା ପଡୁଥାଏ। କିଛି ସମୟ ପରେ ଡି.ଆଇ.ଜିଙ୍କ ସଙ୍ଗେ କଟକ-ପାରାଦ୍ୱୀପ ରାସ୍ତା ସଫା ପ୍ରଥମ କାମ ଭାବି କୁଜଙ୍ଗ ଥାନା ଆଡ଼େ ବାହାରିଲୁ। କୁଜଙ୍ଗଠାରୁ ଆଠ ଦଶ କିଲୋମିଟର ପଙ୍କପାଳ ଗାଁ ପର୍ଯ୍ୟନ୍ତ ରାସ୍ତା ସଫା କାମ ପୁଲିସ୍-ସ୍ଥାନୀୟ ଲୋକଙ୍କ ସହାୟତାରେ କରିସାରିଥାଏ। ମାତ୍ର ପଙ୍କପାଳ ଗାଁ ପାଖେ ଗୋଟେ ଶହେ ବର୍ଷର ପୁରୁଣା ଚାକୁଣ୍ଡା ଗଛକୁ କାଟି ସଫା କରିବା କଷ୍ଟକର ହେଲା। ପାଖରେ ପାଓ୍ୱାର କଟର କିମ୍ବା ପେଲୋଡ୍, ବୁଲଡୋଜର ନ ଥାଏ। କେବଳ ସ୍ଥାନୀୟ କରତିଆଙ୍କ କରତ ଉପରେ ନିର୍ଭର। ରାତ୍ରୀ ୧୨ଟା ପର୍ଯ୍ୟନ୍ତ ଗଛ କଟା ହେଲା ମାତ୍ର ସରିଲାନି। ଡି.ଆଇ.ଜି ଶ୍ରୀ ଦାସ ସେଇଠି ରହିଲେ, ମୁଁ ଫେରିଲି କଟକ, କଟକ ଆଡୁ ଜଗତସିଂହପୁର ରାସ୍ତା ସଫାକରିବା ପାଇଁ। ଦୁଇପଟୁ ଗଲେ, କାମ ଶୀଘ୍ର ହୋଇଯିବ। ସେ ପର୍ଯ୍ୟନ୍ତ ଜଗତସିଂହପୁର ବାହାର ଜଗତଠାରୁ ସମ୍ପୂର୍ଣ୍ଣ ଭାବେ ବିଚ୍ଛିନ୍ନ। ସେ ଅଞ୍ଚଳରୁ କୌଣସି ପ୍ରକାର ଖବର ମିଳୁ ନ ଥାଏ। ପ୍ରାୟ ରାତ୍ରୀ ୩ଟାରେ କଟକରେ ପହଞ୍ଚି ଏକ ତାରିଖ ଦିନ ସକାଳ ୯ଟାରେ ଗୋଟିଏ ପ୍ଲାଟୁନ୍ ଓ.ଏସ.ପି.ଙ୍କୁ ଷଷ୍ଠ ବାଟାଲଲିୟନକୁ ଧରି ଜଗତସିଂହପୁର ରାସ୍ତାକୁ ବାହାରିଲୁ। ଓ.ଏମ.ପି ଛକଠାରୁ ରାସ୍ତା ଉପରେ ଗଛ ପଡ଼ିଥାଏ। ଛକ ପାଖରୁ ୧୦୦ ଗଜ ଯିବା କଷ୍ଟ। ଏଇ ସମୟରେ ଭୁବନେଶ୍ୱରରୁ ଆନ୍ଧ୍ରପ୍ରଦେଶର ପି.ଡବ୍ଲୁ.ଡି.ର କେତେକ ଯନ୍ତ୍ରୀ, ତିନିଟା ଜେସିବି ଏବଂ ଗୋଟେ କ୍ୟାଟରପିଲାର ଧରି ପହଞ୍ଚିଲେ। ତାଙ୍କ ସାଙ୍ଗରେ ପତି ବୋଲି ଜଣେ ଇଞ୍ଜିନିୟର ରାଉରକେଲାରୁ ଆସିଥାନ୍ତି।

ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ ହେଲା। ଓ.ଏମ.ପି. ଛକଠାରୁ ରାସ୍ତା ଉପରେ ଉପୁଡ଼ି ପଡ଼ିଥିବା ବହୁ ବର୍ଷର ପୁରୁଣା ଚାକୁଣ୍ଡା, ବର, ଆମ୍ବଗଛଗୁଡ଼ିକୁ କ୍ୟାଟରପିଲାର ସାହାଯ୍ୟରେ ଟାଣି ରାସ୍ତା କଡ଼କୁ ରଖି ଦିଆଗଲା। ବାକି ତିନିଟା, ଜେ.ସି.ବି. ରାସ୍ତା ସଫା କରି ଚାଲିଲେ। ଚାଲି ଚାଲି ଘଣ୍ଟାକ ଭିତରେ ଆମେ କନ୍ଦରପୁରରେ ପହଞ୍ଚିଲୁ। ଆଶା ଥାଏ ସନ୍ଧ୍ୟା ସୁଦ୍ଧା ଜଗତସିଂହପୁରରେ ପହଞ୍ଚିଯିବୁ। କନ୍ଦରପୁରଠାରୁ ଜଗତସିଂହପୁର ଆଡ଼େ ଚାଲିଲୁ। ପ୍ରାୟ ୩ କିଲୋମିଟର ଗଲାପରେ ସାଙ୍ଗରେ ଆଣିଥିବା କ୍ୟାଟରପିଲାର, ରାସ୍ତାକଡ଼ କାଦୁଅରେ ଫସିଗଲା।

ଯେତେ ଚେଷ୍ଟା କଲୁ ତାକୁ ଆଉ ବାହାର କରିପାରିଲୁ ନାହିଁ। ତାକୁ ସେଇଠି ଛାଡ଼ି ତିନୋଟି ଜେ.ସି.ପି ଧରି ରାସ୍ତା ସଫା କରି ଆଗେଇ ଚାଲିଲୁ। ପ୍ରାୟ ୧୦ କିଲୋମିଟର ଗଲାପରେ ଅନନ୍ତବ୍ରହ୍ମପୁର ଗାଁ ପାଖ ରାସ୍ତା ଉପରେ ଦେଖିଲୁ ଗୋଟିଏ ବିରାଟ ଚାକୁଣ୍ଡା ଗଛ ରାସ୍ତା ଉପରେ ପଡ଼ିଛି। ମୂଳ ଗଛ ଗୋଲେଇ ପ୍ରାୟ ୩୦ ଫୁଟ୍, ତା'ର ଦୁଇଟା ମୁଖ୍ୟ ଶାଖା, ମୂଳଗଣ୍ଡିଠାରୁ ୧୫ ଫୁଟ ଉପରେ ବାହାରି ଥାଏ। ଏହି ଦୁଇଟି ମୁଖ୍ୟ ଶାଖାର ଗୋଲେଇ ୨୦ ଫୁଟ୍ ଏବଂ ୧୮ ଫୁଟ୍। ସେଇଠି ଅଟକିଗଲୁ। ସାଙ୍ଗରେ ଥିବା ୪ଟା ପାୱାର କଟର କାମ ଦେଲାନି। ତିନୋଟି ଭାଙ୍ଗିଗଲା। ଆଉ ଗୋଟେ ଖରାପ ହୋଇଗଲା। ଏକାଠି କରି ତିନିଟା ଜେ.ସି.ପିକୁ ଲଗାଇଲୁ ମାତ୍ର ଗଛ ହାତେ ବି ଘୁଞ୍ଚିଲାନି। ପାଖରେ ଥିବା ଇଂଜିନିୟର (ଆନ୍ଧ୍ର) କହିଲେ ଗଛର ଡାହି ନ କାଟିଲେ ହେବନି। କରତରେ କାଟିବାକୁ ହେବ, ନ ହେଲେ ପାୱାର କଟର ଭୁବନେଶ୍ୱରରୁ ଆଣିବାକୁ ପଡ଼ିବ। ଡାଳଗୁଡ଼ିକୁ କାଟିଲେ, ମଧ୍ୟ ରାସ୍ତା ଉପରୁ ହଟେଇବାକୁ କ୍ୟାଟରପିଲାର ଦରକାର। ସେତେବେଳକୁ ଆଉ ଗୋଟେ କ୍ୟାଟରପିଲାର କନ୍ଦରପୁର ପାରାଦ୍ୱୀପ ରାସ୍ତାରେ ଯାଇ ସଂପୁର ଗାଁ ପାଖେ ଅଟକିଥାଏ। ସଂପୁର ଗାଁର ଠାକୁର ଘରପାଖେ ଗୋଟିଏ ପୁରୁଣା ବିରାଟ ବରଗଛ ଭାଙ୍ଗି ପଡ଼ି ସମ୍ପୂର୍ଣ୍ଣ ଭାବେ ରାସ୍ତା ବନ୍ଦ କରି ଦେଇଥାଏ। ଗଛଟିକୁ ଦୁଇଖଣ୍ଡ କରି ନ କାଟିଲେ ରାସ୍ତା ଖୋଲିବା ସମ୍ଭବ ନୁହେଁ। ତେଣୁ କ୍ୟାଟରପିଲାର ଠିଆ ହୋଇଥିଲା। ଗାଁ ବାଲା ରାତିରେ କରତିଆଙ୍କୁ ପାଉ ନ ଥାନ୍ତି। ତେଣୁ ଅନନ୍ତପୁରରୁ ଫେରି, ମୁଁ ସଂପୁର ଯାଇ ସେଠୁ କ୍ୟାଟରପିଲାର ଧରି ଆସିଲି। ସେତେବେଳକୁ ରାସ୍ତା ଖୋଲିଯିବ ବୋଲି ପ୍ରାୟ କୋଡ଼ିଏ ଖଣ୍ଡ କାର, ଜିପ୍‌ରେ ଥିବା ସ୍ତ୍ରୀ ପିଲାମାନେ ରାସ୍ତା ଉପରେ ଅପେକ୍ଷା କରିଥାନ୍ତି, ଜଗତସିଂହପୁର, ବାଲିକୁଦା, ତିର୍ତ୍ତୋଲ, ଏରସମା, ଆଡ଼େ ଯିବା ପାଇଁ। ସେମାନଙ୍କ ମଧ୍ୟରୁ କେତେ କଟକ, ପୁରୀ, ଭୁବନେଶ୍ୱରରୁ ଆସିଥିଲା ବେଳେ ଆଉ କେତେ ପିଲାଛୁଆଙ୍କୁ ନେଇ ଜାମସେଦପୁର, ରାଉରକେଲା ଆଡୁ ଆସିଥାନ୍ତି। ରାସ୍ତାରେ ପ୍ରାୟ ଦେଢ଼ଦିନ କଟିଗଲାଣି। ଏଣେ ରାସ୍ତା ଉପରେ ପିଇବାକୁ ପାଣି ନାହିଁ କି ଖାଇବାକୁ ଜଳଖିଆ ଦୋକାନ ନାହିଁ। ପାଖରେ ଥିବା ବିସ୍କୁଟ ଶେଷ ହେଲାଣି। ସ୍ତ୍ରୀ,

ଛୁଆଙ୍କ ମୁହଁ ଶୁଖି ଯାଇଥାଏ, ଆଖିରେ ଆଖିଏ ଲୁହ ଗାଁରେ ତାଙ୍କ ଘରେ ପିଲାଛୁଆ ବଞ୍ଚିଛନ୍ତି କି ମରିଛନ୍ତି ଜାଣିବାକୁ ଉତ୍କଣ୍ଠା। ଏଣେ ରାସ୍ତା ନାହିଁ। ତେଣେ ପେଟକୁ ମୁଠେ ଖାଇବାକୁ ନାହିଁ। ଆମ ଦଳ ବି ସେତେବେଳକୁ ଭୋକରେ ଆଉଟି ହେଲେଣି। ଓ.ଏସ.ପି ପ୍ଲାଟୁନ ରାସ୍ତା କଡ଼ରେ ରୋଷେଇ ଆରମ୍ଭ କରି ସାରିଲେଣି। ଦୁଇଜଣ ଏ.ପି.ଆର. ସାଙ୍ଗରେ ଆଣିଥିବା ଚୂଡ଼ା, ଗୁଡ଼କୁ ଏକାଠି କରି ଖାଇଲେ ଏବଂ ରାସ୍ତା ପାଖ ଟିଉବୱେଲରୁ ପାଣି ଆଣି ପିଇଲେ। ସମସ୍ତେ ଏକ ଲୟରେ ଚାହିଁଥାନ୍ତି ଗଛଟା କେତେବେଳେ ରାସ୍ତାରୁ ଉଠିବ।

ପ୍ରାୟ ରାତ୍ରୀ ଦଶଟା ବେଳକୁ କ୍ୟାଟରପିଲାର ଆସି ଜାଗା ଉପରେ ପହଞ୍ଚିଗଲା। ସାଙ୍ଗେ ସଙ୍ଗେ ଗଛକୁ ରାସ୍ତା ଉପରୁ ହଟାଇବାର ବନ୍ଦୋବସ୍ତ କରାଗଲା। ତିନିଟା ଯାକ ଜେ.ସି.ପି ଏବଂ କ୍ୟାଟରପିଲାର ଲାଗି ମଧ ରାସ୍ତା ଉପରୁ ଚାକୁଣ୍ଡା ଗଛକୁ ଘୁଞ୍ଚେଇ ପାରିଲେ ନାହିଁ। ଶେଷକୁ କଥା ହେଲା ଗଛର ଦୁଇଟି ଡାଳକୁ ନ କାଟିଲେ ରାସ୍ତା ସଫା ହେବା କଷ୍ଟକର। ତେଣୁ ରାତାରାତି କରତିଆଙ୍କୁ ଯୋଗାଡ଼ କରାଯିବ। ଗାଁ ଲୋକଙ୍କ ସାହାଯ୍ୟରେ କରତିଆ ଯୋଗାଡ଼ ହେଲେ। ସେମାନେ କାଟି ଦେଲେ ଗଛ ଗଣ୍ଡି ନେବେ। ସେଥିରେ ସମସ୍ତେ ରାଜି ହେଲେ ଏବଂ ମୁଁ ମଧ କହିଲି, ଗଛ କାଟି ସେମାନେ ଗଣ୍ଡି ନିଅନ୍ତୁ। ଅନନ୍ତ ବ୍ରହ୍ମପୁର ପାଖ ଗାଁରୁ କାଳିଚରଣ ପହଞ୍ଚିଗଲେ। ସେ ମଧ ସାହାଯ୍ୟ କଲେ। ଏତିକି ବେଳେ ଆନ୍ଧ୍ର ପାର୍ଟିରୁ ଜଣେ କହିଲେ ଯେ ପାୱାରକଟର ଚନ୍ଦକା ଅଞ୍ଚଳରେ କାମ କରୁଥିବା ତାଙ୍କର ଗୋଟିଏ ଟିମ୍ ପାଖେ ଅଛି। ତାକୁ ନେଇ ଆସିଲେ କରତିଆ ସାଙ୍ଗକୁ ପାୱାର କଟର ସାହାଯ୍ୟ କରନ୍ତା। ରାସ୍ତା ଉପରେ ଥିବା ଲୋକମାନଙ୍କର ଅବସ୍ଥା, ଛୁଆପିଲାଙ୍କ କାନ୍ଦ, ଏଣେ ଗାଁ ଲୋକମାନଙ୍କର ବିକଳ ଦେଖି, ରାତିରାତି ପାୱାର କଟର ଆଣିବା ପାଇଁ ଜିପ୍ ଧରି ବାହାରିଲୁ ଚନ୍ଦକା ଆଡ଼େ। ଅନନ୍ତବ୍ରହ୍ମଠାରୁ ଚନ୍ଦକା ପ୍ରାୟ ୮୦ କି.ମି. ବାଟ। ରାତିରେ ରାସ୍ତା ଖାଲିଥିବା ଯୋଗୁଁ ଅଶୀ, ନବେ କିଲୋମିଟର ସ୍ପିଡ୍‌ରେ ଯାଇ ପହଞ୍ଚିଲୁ ଚନ୍ଦକା ଥାନା ପାଖେ। ଚନ୍ଦକା ଅଞ୍ଚଳ ମଧ ଧ୍ୱସ୍ତବିଧ୍ୱସ୍ତ। ଥାନା ଭାଙ୍ଗି ଯାଇଥାଏ। ଥାନାରେ ପହରା ନ ଥିଲା। ଯେତେ ଡାକିଲେ କେହି

ଶୁଣିଲେନି। ବଜାର ପାଖେ ଗୋଟେ ଭଙ୍ଗାଘର ବାରଣ୍ଡାରେ ଶୋଇଥିବା ଜଣେ ଲୋକଠାରୁ ବୁଝିଲୁ ଯେ ଆନ୍ଧ୍ରପାର୍ଟି କାମସାରି ଭୁବନେଶ୍ୱର ଫେରିଗଲେଣି। ଭୁବନେଶ୍ୱରରେ ପି.ଡବ୍ଲୁ.ଡି. ଆର.ବି.ରେ ରହୁଥିବା ଆନ୍ଧ୍ରପାର୍ଟି ପାଖରୁ ତିନୋଟି ପାୱାରକଟର ନେଇ ଜାଗା ଉପରେ ପହଞ୍ଚିଲା ବେଳକୁ ଭୋର ଚାରିଟା। ଖିଆ ନାହିଁ ପିଆ ନାହିଁ। ସାଙ୍ଗେ ସାଙ୍ଗେ ପାୱାରକଟର କାମରେ ଲଗାଗଲା। ଗୋଟେ ଅଳ୍ପ ସମୟ କାମକଲା ପରେ ଭାଙ୍ଗିଗଲା। ଅନ୍ୟ ଦୁଇଟି ମୋଟେ କାମ କଲାନି। ଅତ୍ୟନ୍ତ ନିରାଶ ହେବାକୁ ପଡ଼ିଲା। ପାୱାରକଟର ଆସିବା ଶୁଣି, ରାତି ଚାରିଟାରେ ମଧ୍ୟ ରାସ୍ତା କଡ଼ରେ କାର, ଜିପ୍ ଭିତରେ ଅପେକ୍ଷା କରିଥିବା ଯାତ୍ରୀମାନେ ଆଶା ନେଇ ଠିଆ ହୋଇଥାନ୍ତି। ଭାବିଥିଲେ ସକାଳୁ ସକାଳୁ ରାସ୍ତା ସଫା ହୋଇଯିବ। ମାତ୍ର ତାଙ୍କ ଆଶା ସଫଳ ହେଲାନି। ପାୱାରକଟର ଅକାମୀ ହେଲା ପରେ ସମସ୍ତେ ଫେରିଲେ ନିଜ ନିଜ ଗାଡ଼ି ଭିତରକୁ। ମୋତେ ବଡ଼ ହେଲ୍‌ପଲେସ୍ ଲାଗୁଥାଏ। ଏତେ କଷ୍ଟ କରି ଯେତେବେଳେ କିଛି କାର୍ଯ୍ୟକାରୀ ହେଉ ନ ଥାଏ, ମନ ଭିତରେ କ୍ଷୋଭ, ଦୁଃଖ ବି ଆସୁଥାଏ ମାତ୍ର ବାଟ କିଛି ନ ଥାଏ।

ଦୁଇ ତାରିଖ ସକାଳ ହେଲା। ପୁଣି ସମସ୍ତେ ଗଛ ପାଖେ ଠିଆ ହେଲେ। ଗାଁ ପାଖରୁ କରତିଆ ଯୋଗାଡ଼ ହୋଇ ଗଛର ମୁଖ୍ୟ ଡାଳ କାଟିବା ଆରମ୍ଭ କଲେ। ପ୍ରାୟ ଆଠଟା ବେଳକୁ କରତ ଭାଙ୍ଗିଲା। ଗୋଟିଏ ଡାଳର ଫାଳେ କଟା ହୋଇ ନ ଥାଏ। ଠିଆ ହୋଇଥିବା ଯାତ୍ରୀମାନେ ନିରାଶ ହୋଇ ଦୀର୍ଘ ନିଶ୍ୱାସ ପକାଇ ଗାଁ ପାଖ ଟିଉବୱେଲରୁ ପାଣି ବୋତଲରେ ନେଇ ପିଲାମାନଙ୍କୁ ପିଇବାକୁ ଦେଲେ। କ'ଣ ବା କରିବେ, ଆଗକୁ ଯିବାକୁ ବାଟ ନାହିଁ କି ପଛକୁ ଫେରିବାକୁ ବାଟ ନାହିଁ, ପ୍ରତ୍ୟେକ ମୁହୂର୍ତ୍ତରେ ଆଶା ରାସ୍ତା ଖୋଲିଯିବ। କରତ ଭାଙ୍ଗିଲା ପରେ ଗାଁ ବାଲା କହିଲେ ଅଳ୍ପ ଦୂର ବିରିଡ଼ି ପାଖେ କରତକଳ ଅଛି, ସେଇଠୁ ବଡ଼ କରତ ଆଣିଲେ ଗଛ କଟିବ। ପୁଣି ଲୋକ ଦଉଡ଼ିଲେ କରତକଳରୁ କରତ ଆଣିବାକୁ। ଯାହା ପଇସା ନଉ, ତା'ଠାରୁ କରତ ଆଣିବାକୁ ହେବ, କରତିଆ ବସିଥାନ୍ତି। କରତ ଆସିଲେ କଟା ଆରମ୍ଭ କରିବେ।

ଦିନ ପ୍ରାୟ ୧୨ଟା। ଗଛ କାଟିବାରେ କିଛି ଅଗ୍ରଗତି ନାହିଁ।

ଜଗତସିଂହପୁର କିମ୍ବା କଟକ ଆଡୁ ଆମପାଖକୁ କିଛି ଖବର ଆସୁ ନ ଥାଏ। ଏସ୍.ପି. କଲେକ୍ଟର ଜଗତସିଂହପୁର ଜାଣିଲେ ମଧ୍ୟ ଆସିବାକୁ ବାଟ ନ ଥିବା ଯୋଗୁଁ ସେମାନେ ଆସି ପାରୁ ନ ଥାନ୍ତି। କେବଳ ଆମେ ଅଟକି ଥିବା ଯାଗା ନୁହେଁ, ଏହା ଆଗକୁ ମଧ୍ୟ ବିରାଟ ବିରାଟ ଗଛ ରାସ୍ତା ଉପରେ ପଡ଼ିଛି। ଆସିବାକୁ ବାଟ ନାହିଁ। ଦିନ ବାରଟା ବେଳକୁ ଅନନ୍ତବ୍ରହ୍ମପୁରର ଜଣେ ଅଶୀ ବର୍ଷର ପାଣିଗ୍ରାହୀ ବୁଢ଼ା ଆସି ରାସ୍ତା ପାଖରେ ପହଞ୍ଚି ରାସ୍ତା ଉପରେ ପଡ଼ିଥିବା ଗଛ ଆଡ଼େ ଚାହିଁଲେ। ହାତରେ ଖଣ୍ଡେ ବଙ୍କୁଲି ବାଡ଼ି, ଅଣ୍ଟାରେ ଖଣ୍ଡେ ଛିଣ୍ଡା କରିଆ। ଦେହ ଲଙ୍ଗଳା। ବୁଢ଼ା ପାଣିଗ୍ରାହୀଙ୍କର ସବୁଘର ଭାଙ୍ଗି ଯାଇଥାଏ। ନଡ଼ିଆ ଗଛ ଉପୁଡ଼ି ପଡ଼ି ରାସ୍ତାରେ ପଡ଼ିଥାଏ। କିଛି ସମୟ ରାସ୍ତା ଉପରେ ଠିଆ ହେଲାପରେ ବୁଢ଼ା ମୋତେ ଡାକି କହିଲେ ହେ ବାବୁ ଶୁଣ, ବୁଢା ପାଖକୁ ଗଲି। କ'ଣ କହୁଛନ୍ତି, ବୋଧେ କିଛି ସାହାଯ୍ୟ ଚାହୁଁଛନ୍ତି। ବୁଢ଼ା ମୋତେ ଦେଖି କହିଲେ "ବୁଝିଲ ବାବୁ ତୁମେ ଯେତେ ପରିଶ୍ରମ କଲେ, ଏ ଗଛକୁ ଚାଖଣ୍ଡେ ବି ଘୁଞ୍ଚାଇ ପାରିବନି। ମୋ ପିଲାଦିନେ ମୁଁ ଦେଖିଛି, ଏ ଗଛ ଏମିତି ଥିଲା। ଅଶୀ ବର୍ଷ ଭିତରେ ଏଇ ଗଛ ଏମିତି ଥିଲା। ଦୁଇଶହ କି ଅଢ଼େଇ ଶହ ବର୍ଷର ଗଛ। ଏଇ ଗଛରେ ପ୍ରେତ ଅଛି। କେଉଁ କାଳରୁ ସେ ପ୍ରେତ ଏ ଗଛରେ ଅଛି ଆମେ କହି ପାରିବୁନି, ମାତ୍ର ଜାଣୁ ଯେ ଏ ଗଛରେ ତା'ର ଆଶ୍ରା। ବାବୁ ପ୍ରେତପୂଜା ଟିକିଏ କର, ଗଛ କଟିଯିବ, ରାସ୍ତା ସଫା ହୋଇଯିବ। ନ ହେଲେ ସେମିତି କରତ ଭାଙ୍ଗିବ, ବୁଲଡ଼ୋଜର ଫେଲ ମାରିବ, କିଛି କରିପାରିବନି"। ଏତକ କହି ବୁଢ଼ା ଗାଁ ଆଡ଼େ ବାହାରିଲେ। ମଣିଷ ଯେତେବେଳେ ସବୁଆଡୁ ଫେଲ୍ ମାରେ, ସେ ସେତେବେଳେ ନିଜକୁ ଅସହାୟ ମନେକରେ। ବିଜ୍ଞାନ ଯୁଗରେ ଭୂତ, ପ୍ରେତର ଅବତାରଣା ଅନ୍ଧ ବିଶ୍ୱାସ ଛଡ଼ା କ'ଣ ବା ହୋଇପାରେ? ମାତ୍ର ଅସହାୟ ହେଲାପରେ, ଅନ୍ଧବିଶ୍ୱାସ ବିଶ୍ୱାସ ଭିତରେ ଉଙ୍କିମାରେ। ଗଛ ଉପରେ ପ୍ରେତ ଅଛି- ପ୍ରେତ ପୂଜା ନ କଲେ ଗଛ ରାସ୍ତା ଉପରୁ ଘୁଞ୍ଚିବନି କି ଅଭୂତ ଚିନ୍ତା, ତଥାପି ବୁଢ଼ାଙ୍କୁ ଅଟକାଇ କହିଲି "ତା ହେଲେ ଆପଣ ଟିକିଏ ପ୍ରେତ ପୂଜା କରିଦିଅନ୍ତୁ"। କେବଳ ମୁଁ ନୁହେଁ, ରାସ୍ତା କଡ଼ରେ ଘରକୁ ଯିବା ପାଇଁ ପିଲା ଛୁଆଙ୍କୁ ଧରି ଦୁଇ ଦିନ କାଳ

ଆଖିଆ ଅପିଆ ରହି ଅପେକ୍ଷା କରିଥିବା ଲୋକମାନେ ମଧ୍ୟ ତାଙ୍କୁ ଅନୁରୋଧ କଲେ "ଆଜ୍ଞା ଆପଣ ଟିକିଏ ପୂଜା କରିଦିଅନ୍ତୁ, କୋଡିଏ ଘଣ୍ଟା ହେଲା, ଏଇଠି ପଡ଼ିଲୁଣି"। ସେମାନଙ୍କ କଥାଶୁଣି ପାଣିଗ୍ରାହୀ ବୁଢ଼ା ଆଗକୁ ଯିବେ କି ପଛକୁ ଫେରିବେ ଠିକ୍ କରିପାରିଲେ ନାହିଁ। ବଙ୍କୁଲିବାଡ଼ି ଖଣ୍ଡିକୁ ଟେକି କହିଲେ କ'ଣ ଅଛି ଯେ ପ୍ରେତ ପୂଜା କରିବି। ଜଣେ କାର ଡ୍ରାଇଭର କହିଲା "ଆଜ୍ଞା ମୋ ଗାଡ଼ିରେ ଧୂପ କାଠି ଅଛି, କଦଳୀ ଦିଇଟା ଅଛି, ତାକୁ ନେଇ ପୂଜା କରି ଦିଅନ୍ତୁ, ଏ ସମୟରେ ଆଉ କ'ଣ ମିଳିବ"? ପାଣିଗ୍ରାହୀ ବୁଢ଼ା କାନ୍ଧ ଉପରୁ ଦରଛିଣ୍ଡା ଗାମୁଛା ଖଣ୍ଡେ ବାହାରକରି ପାଖ ପୋଖରୀରେ ଗାଧୋଇଲେ। ପିନ୍ଧିଥିବା ଗାମୁଛାକୁ ବଦଳେଇ ଓଦା ଗାମୁଛା ପିନ୍ଧି ଗଛମୂଳେ ଧୂପ ଦେଲେ। କିଛି ସମୟ ପାଇଁ ମନ୍ତ୍ର ଉଚ୍ଚାରଣ କଲାପରେ, କଦଳୀ ଦୁଇଟିକୁ ପୂଜା କରି, ଗଛର ଗଣ୍ଡି ଉପୁଡ଼ି ପଡ଼ିଥିବା ସ୍ଥାନରେ ପକାଇ ଦେଲେ। ପକାଇଦେଲା ପରେ ବଡ଼ ପାଟିରେ ଅଦୃଶ୍ୟ ଆଡ଼େ ଲକ୍ଷ୍ୟ କରି କହିଲେ "ଯା ବାବା ଯା ଏତେ ଦିନ ତ ଏଠି ବସାବାନ୍ଧି ଥିଲୁ, ଏବେ ତ ତୋ ମୂଳ ଉପୁଡ଼ି ପଡ଼ିଲା। ଆଉ କ'ଣ ଏ ଗଛରେ ରହିପାରିବୁ। କାହିଁକି ଏତେ ଲୋକଙ୍କୁ ହଇରାଣ କରୁଛୁ ଯା।" ଏତିକି କହି ପାଣିଗ୍ରାହୀ ବୁଢ଼ା ଗାଁ ଆଡ଼େ ଚାଲିଲେ। ସେତିକି ବେଳକୁ କରତ କଳରୁ ଦି ପଟ କରତ ଆସି ପହଞ୍ଚିଲା। କରତିଆ ମାନେ ଦିପଟ କରତ ଧରି ଦିଇଟା ମୁଖ୍ୟ ଡାଳ କାଟିବା ଆରମ୍ଭ କଲେ। ମୁଁ ଚାଲି ଚାଲି ଅନନ୍ତ ବ୍ରହ୍ମପୁର ଗାଁ ପାଖକୁ ଗଲି। ଛୋଟିଆ ବ୍ରାହ୍ମଣ ଶାସନ। ଆଠ ଦଶ ବ୍ରାହ୍ମଣ ଘର। ଗାଁ ଚାରିପଟେ ଆମ୍ବ, ପଣସ, ନଡ଼ିଆ ତୋଟା ଥିଲା। ମହାବାତ୍ୟାରେ ଗୋଟିଏ ହେଲେ ଗଛ ନ ଥାଏ। ସବୁ ଲମ୍ବା ହୋଇ ଶୋଇ ପଡ଼ିଥାନ୍ତି। ଗାଁର ମାଟି ଘରସବୁ ମାଟିରେ ମିଶି ଯାଇଥାଏ। ଗୋରୁ ଗାଈଙ୍କ ଶବ ପାଖ ବିଲରେ ପଡ଼ି ଫୁଲି ଗଲେଣି। ଗନ୍ଧ ଆସ୍ତେ ଅସ୍ତେ ବାହାରିଲାଣି। ଗାଁ ଆଡ଼େ ଚାହିଁଲା ବେଳେ ଦେଖିଲି ମୋ ସାଙ୍ଗ ବାଣୀବିହାରରେ ପଢୁଥିବା ଜଣେ ସହପାଠୀ ବନ୍ଧୁଙ୍କୁ। ବନ୍ଧୁ ମୋତେ ଦେଖି କହିଲେ ଆରେ ତୁ କ'ଣ କାଲିଠାରୁ ଆସି ଏଇଠି ପଡ଼ିଛୁ? କ'ଣ ଖାଇଛୁ ଭାଇ? ମୋ ଠାରୁ ଶୁଣିଲା ପରେ ସେ ମୋତେ ତାଙ୍କ ଘରକୁ ଡାକିଲେ। ତା' ଘର ବି ଭାଙ୍ଗି ଯାଇଥାଏ। କେବଳ ପଛପଟ ପକ୍କା ଘରଟି

ଥାଏ। ଦାଣ୍ଡ ଘରେ ଗାଇ ଦୁଇଟି ବନ୍ଧା ହୋଇଥାନ୍ତି। ତା'ର ନଡ଼ିଆ, ଗୁଆ ବାଡ଼ି ଭାଙ୍ଗି ଧୂଳିସାତ୍। ସେଇ ବନ୍ଧୁଙ୍କ ଘର ପିଣ୍ଡା ଉପରେ ମୋ ପୁଲିସ୍ ୟୁନିଫର୍ମ ବଦଳାଇ ତା' ଭଙ୍ଗା ବାଥ୍ରୁମରେ ଗାଧୋଇଲି। ଦୁଇଦିନ ହେଲା ଗାଧୋଇ ନ ଥାଏ। ଦେହରୁ ଏକ ପ୍ରକାର ଗନ୍ଧ ବାହାରୁଥାଏ। ଗାଧୋଇ ସାରିଲା ପରେ ବନ୍ଧୁଙ୍କ ସ୍ତ୍ରୀ ପଚାରିଲେ "କ'ଣ ଖାଇବେ ଘରେ ତ କିଛି ନାହିଁ। ଚାରିଆଡ଼େ ପାଣି। ରୋଷେଇ କରିବାକୁ ଗ୍ୟାସ ନାହିଁ କି କାଠ ନାହିଁ, ଆମ ଘରେ ତିନି ଦିନ ହେଲା ରୋଷେଇ ନାହିଁ- ଜାଣିଥିଲେ ଅବା ଅରୁଆ ଭାତ ମୁଠେ ଫୁଟେଇ ଦେଇଥାନ୍ତି- ଏ କ'ଣ ମୋତେ କିଛି କହିଲେ"। କ'ଣ ବା କହିବି। ହାତରେ ଗୋଟେ କଂସା ବେଲାରେ ଅଧ ବେଲେ ଚୁଡ଼ା, ଗୁଡ଼ କଦଳୀ, ନଡ଼ିଆ ଚକଟି ଆଣି ଦେଲେ। ଦି ଦିନ ହେଲା ଖାଇ ନ ଥିଲି। ଠାକୁରଙ୍କ ପ୍ରସାଦ ଭାବି ତାକୁ ଖାଇ ଫେରିଲି ଗଛ ପାଖକୁ। ଅଦ୍ଭୁତ, ସେତେବେଳକୁ କରତିଆ ଗୋଟେ ମୁଖ୍ୟ ଡାଳକୁ କାଟି ସାରିଲେଣି, ଆଉ ଗୋଟେ ସରିବା ଉପରେ। ଦିନ ତିନିଟା ବେଳକୁ ଦୁଇଟି ମୁଖ୍ୟ ଡାଳ ଗଣ୍ଡିରୁ କଟା ସରିଲା। ସଙ୍ଗେ ସଙ୍ଗେ କ୍ୟାଟରପିଲାର ଲାଗି ଦୁଇଟା ଯାକ ଗଣ୍ଡିକୁ ରାସ୍ତା କଡ଼କୁ ପେଲି ଦେଲା ପରେ, ଗଛର ମୁଖ୍ୟ ଗଣ୍ଡିକୁ ତିନୋଟିଯାକ ଯନ୍ତ୍ର ଲାଗି ଠିଆ କରିଦେଲେ। ବେକ କଟା କବନ୍ଧ ପରି ଗଛଟା ଠିଆ ହୋଇ ରହିଲା। ରାସ୍ତା ଉପରେ ଅପେକ୍ଷା କରିଥିବା ଯାତ୍ରୀମାନେ ହରିବୋଲ, ହୁଳହୁଳି ପକାଇଲେ।

କିଛି ଦୂରରେ ପାଣିଗ୍ରାହୀ ବୁଢ଼ା ଠିଆ ହୋଇ ଦେଖୁଥାନ୍ତି। ଜଣେ ଯାତ୍ରୀ ଆସି କହିଲେ ଆଜ୍ଞା ପ୍ରେତ ପୂଜାଟା ଦିନକ ଆଗରୁ କରିଦେଇଥିଲେ ଆମେ ଏତେବେଳକୁ ଘରେ ପହଞ୍ଚ ଯାଆନ୍ତୁଣି। ମୁଁ ତାଙ୍କ ଆଡ଼େ ଚାହିଁଲି। ମନେ ମନେ ଭାବିଲି ଏତେବଡ଼ ସରକାର, ଏତେ ଡିପାର୍ଟମେଣ୍ଟ, କେତେ ଟଙ୍କା ଖର୍ଚ୍ଚ ନ ହେଉଛି ତଥାପି ଆମେ ହେଲପ୍‌ଲେସ୍ ହେଉଛୁ ଠିକ୍ ଦରକାର ବେଳେ- ବିଶ୍ୱାସ କରୁଛେ ପ୍ରେତପୂଜା, ପଶୁବଳୀ ଉପରେ। ଏଇ ହେଉଛି ଆମ ସରକାରଙ୍କ ଆପଦ କାଳୀନ ପ୍ରସ୍ତୁତି।

—୦୦୦—

# ସେ ପାରିରୁ

ତେନ୍ତୁଳି ବେରେଣି ଗାଁର ଦୁର୍ଗାହାଟ ପଡ଼ିଆରେ, ମହା-ବାତ୍ୟାର ଆଠ ଦିନ ପରେ ଓଡ଼ିଶା ପୁଲିସ୍ ବିଭାଗର କରୁଣା ସଂସ୍ଥା, ବାତ୍ୟା-ପୀଡ଼ିତ ଲୋକମାନଙ୍କ ପାଇଁ ମାଗଣା ଭୋଜନ ବ୍ୟବସ୍ଥା କରିଥାନ୍ତି। ଦୁର୍ଗାହାଟ, ଅନନ୍ତପୁର ଗ୍ରାମପଞ୍ଚାୟତର ଗୋଟିଏ ବ୍ୟବସାୟ କେନ୍ଦ୍ର। ମୁଖ୍ୟତଃ ଏଇ ହାଟରେ ହାଟ ଦିନଗୁଡ଼ିକରେ ମାଛ, କଙ୍କଡ଼ାର ବ୍ୟବସାୟ ଭଲ ହୁଏ। ତା' ଛଡ଼ା ପାନ, ନଡ଼ିଆ, ବିରି, ମୁଗ, ଲଙ୍କା, ଏଇଠୁ ବ୍ୟବସାୟୀମାନେ କଟକ, ପୁରୀଠାରୁ ଆରମ୍ଭ କରି କଲିକତା ପର୍ଯ୍ୟନ୍ତ ନେଇଥାନ୍ତି। ମାଛ, କଙ୍କଡ଼ାର ପେଣ୍ଟ- ଏହି ହାଟ। ଚାରିପଟେ ବର, ଓସ୍ତ, ଝାଉଁ, ଲଙ୍କା ଆମ୍ବ ଗଛରେ ହାଟ ପଡ଼ିଆ ବାହାର ଜଗତକୁ ଦିଶେନି। ହାଟର ଉତ୍ତର ପୂର୍ବ ଦିଗକୁ ବୀସ୍ତିର୍ଣ୍ଣ ଚାଷ ଜମି ପରେ ପରେ ବାଲିବନ୍ତ- ତା'ପରେ ଛୋଟ ଛୋଟ ନଈ, ଝାଉଁ ଜଙ୍ଗଲ, ପରେ ସମୁଦ୍ର। ହାଟ ଠାରୁ ସମୁଦ୍ର ପ୍ରାୟ ଦଶ କିଲୋମିଟର ବାଟ। ହାଟ ପାଖକୁ ଲାଗି ତେନ୍ତୁଳି ବେରେଣି ଗାଁର ଛୋଟ ସ୍କୁଲ ଘର। ତଳ ଅଞ୍ଚଳର ପିଲାମାନେ ଆସି ଏଇଠି ପଢ଼ନ୍ତି।

ହାଟ ପଡ଼ିଆରେ ସେଦିନ ଭାରି ଭିଡ଼। ଛୋଟଛୁଆ, ମରଦ, ମାଇପେ, ବୁଢ଼ା, ବୁଢ଼ୀ ହଜାର ହଜାର ଲୋକ। କାହା ଦେହରେ ଖଣ୍ଡେ ଭଲ ପିନ୍ଧା ଲୁଗା ନ ଥାଏ। ସମସ୍ତେ ପୁଲିସ ସେବା ସଂସ୍ଥା କରୁଣା ତରଫରୁ ଦିଆଯାଉଥିବା ରନ୍ଧା ଖାଦ୍ୟ ପାଇଁ ଅପେକ୍ଷା କରିଥାନ୍ତି। ମହାବାତ୍ୟାର ଆଠଦିନ ପରେ ମଧ୍ୟ ଏଇ ଅଞ୍ଚଳରେ ବହୁଲୋକ ମୁଠେ ରନ୍ଧା ଖାଦ୍ୟ ଖାଇବାକୁ ପାଇ ନ ଥାନ୍ତି। ଅକ୍ଟୋବର ୨୯ ଶୁକ୍ରବାର ଦିନ ବାତ୍ୟା ଆରମ୍ଭ ହୋଇଥିଲା। ସରକାରଙ୍କ ରିଲିଫ୍ ଚାଉଳ ମୁଣ୍ଡ ପିଛା ୩୦୦ ଗ୍ରାମ ଆସି ପହଞ୍ଚିଲା ୮ ଦିନ ପରେ। ଲୋକେ ଚାଉଳ ଗଣ୍ଡାକୁ ପାଣିରେ ବୁଡ଼ାଇ ଚୋବାଇବା ଛଡ଼ା ବାଟ ନ ଥିଲା।

ନଈକୂଳ ଗାଁ ସବୁ ଭାସିଗଲା ସମୁଦ୍ର ଭିତରକୁ। ସଙ୍ଗରେ ନେଇଗଲା ଘରେ ସାଇତା ହୋଇ ରହିଥିବା ସବୁ ଘର କରଣା ଜିନିଷ। ଭାତ ରନ୍ଧା ହାଣ୍ଡି ଠାରୁ ଆରମ୍ଭ କରି ପିନ୍ଧା ଲୁଗା, ଶୋଇବା ଖଟ ପର୍ଯ୍ୟନ୍ତ। ଯେଉଁ ଗାଁ ପାଖକୁ

ସମୁଦ୍ର ପାଣି ଆସି ପାରି ନ ଥିଲା, ବର୍ଷା ତୋଫାନରେ ସେଇ ଗାଁର ମାଟି କାନ୍ଥ ଭାଙ୍ଗି ପଡ଼ିଥିଲା। ଖଣ୍ଡେ ହେଲେ ଚାଳ ଘର ନ ଥିଲା। ସବୁ ମିଶି ଯାଇଥିଲା ମାଟି ସାଙ୍ଗେ ଏବଂ ମାଟି ତଳେ ରହିଯାଇଥିଲା ଘରର ଜିନିଷ ପତ୍ର। ଉଧାର କରିବାର ବାଟ ନ ଥିଲା। ସରକାରୀ ରିଲିଫ୍ ଚାଉଳ ପାଇଥିଲେ ମଧ୍ୟ, ଘରେ ରୋଷେଇ କରିବାର ସରଞ୍ଜମ ନ ଥିବା ହେତୁ କେହି ଭଲରେ ମୁଠେ ରୋଷେଇ କରି ଖାଇପାରି ନ ଥିଲେ। ପୁଲିସ୍ କରୁଣା ସେବାସଂସ୍ଥା ତରଫରୁ ରନ୍ଧା ଅରୁଆ ଭାତ ସାଙ୍ଗକୁ ଗରମ ଡାଲମା, ସମସ୍ତଙ୍କ ପାଇଁ ଏକ ଅମୃତ ଆହାର ହୋଇଗଲା। ପ୍ରଥମେ ପ୍ରଥମେ କେତେ ଲୋକ, ପେଟରେ ଭୋକ ଥିଲେ ମଧ୍ୟ ବଣ୍ଟା ଯାଉଥିବା ଖାଦ୍ୟ ଖାଇବାକୁ ଆସୁନଥିଲେ। ସେମାନେ ଭାବୁଥିଲେ ପୁଲିସ ତରଫରୁ ଅନ୍ନ ଛତ୍ର ଦିଆଯାଉଛି। ଛତ୍ରରେ ଖାଇବା ଅପେକ୍ଷା ମରିଯିବା ଭଲ, ମାତ୍ର ଯେତେବେଳେ ଜାଣିଲେ ଯେ ତେନ୍ତୁଳି ବେରଣୀ ଠାକୁରାଣୀଙ୍କ ପାଖେ ରୋଷେଇ ହୋଇ ଠାକୁରାଣୀଙ୍କୁ ଭୋଗ କରା ଯାଉଛି, ସେତେବେଳେ ସମସ୍ତେ ପ୍ରସାଦ ଭାବରେ ଗ୍ରହଣ କରି ଖାଇବାପାଇଁ ଭିଡ଼ ବାନ୍ଧିଥାନ୍ତି। କୋଡ଼ିଏ ଖଣ୍ଡ ଗାଁରୁ ପିଲା, ଛୁଆ, ମାଇପେ, ମରଦ ସମସ୍ତେ ଆସିଥାନ୍ତି। ମହାବାତ୍ୟା ଧନୀ, ଗରୀବ ସମସ୍ତଙ୍କୁ ଏକାକାର କରି ଦେଇଛି। ସମସ୍ତଙ୍କ ଅବସ୍ଥା ଏକାପରି।

ହାଟ ମଝିରେ ଥିବା କେଉଁ ଯୁଗର ପୁରୁଣା ବରଗଛଟା ଉପୁଡ଼ି ପଡ଼ି ଲମ୍ବା ହୋଇ ଶୋଇ ଯାଇଥାଏ। ଗୟାସୁର, ଭଗବାନ ବିଷ୍ଣୁଙ୍କ ସଙ୍ଗେ ଯୁଦ୍ଧ କଲା ପରେ, ବିଷ୍ଣୁଙ୍କ ଶସ୍ତ୍ରାଘାତରେ ଯେପରି ଧରାଶାୟୀ। ଗଛର ପୁରୁଣା ଲମ୍ବା ଲମ୍ବା ଡାହିଗୁଡ଼ିକ କାଟି ଦେଲାପରେ କେବଳ ଲମ୍ବ ଗଣ୍ଡିଟା ଦିଗଡ଼ ହୋଇ କବନ୍ଧ ପରି ଗଡୁଛି। ଦିନ ଥିଲା, ଏଇ ଗଛରେ କେତେ ଜାତିର ପକ୍ଷୀ ବସାବାନ୍ଧି ରହୁଥିଲେ। ହାଟ ମଝିରେ ଥିବା ଯୋଗୁଁ, ହାଟୁଆମାନେ ମିଶି ତା'ରି ମୂଳ ଚାରିପଟେ ଗୋଟିଏ ସିମେଣ୍ଟ ପିଣ୍ଡି ତିଆରି କରି ଦେଇଥିଲେ। ସେଇ ପିଣ୍ଡି ଉପରେ ଗାଁ ଯାକର ଭଲ, ମନ୍ଦ କଥା ପଡ଼େ, ନ୍ୟାୟ, ନିଶାପ ହୁଏ। ଖରାଦିନେ, କେତେ ଲୋକ ସିମେଣ୍ଟ ଚଟାଣକୁ ଗାମୁଛାରେ ଝାଡ଼ି ଦେଇ ଶୋଇ ଯାଆନ୍ତି। ସମୁଦ୍ର ଆଡୁ ବୋହି ଆସୁଥିବା ଥଣ୍ଡା ପବନରେ ନିମିଷକେ ଭିତରେ ନିଦ ଘୋଟି ଯାଉଥିଲା। ଆଜି ସେଇ ବରଗଛ, ମହାବାତ୍ୟାରେ, ସିମେଣ୍ଟ ଚଟାଣକୁ ଧରି ଉପୁଡ଼ି ପଡ଼ିଛି।

ମଝିରୁ କଟାହୋଇ କବନ୍ଧ ପରି ଗଡୁଥିବା ବରଗଛର କାଠ ଗଣ୍ଡି ପାଖେ ବସିଥିଲା ଆଠଗରିଆ ଗାଁର ସୁକୁମାର ମଣ୍ଡଳ। ଆଠଗରିଆ ଗାଁ କାଠଗଡ଼ି ନଈକୂଳେ। ଏଇ ଛୋଟିଆ ନଈଟି ମାଛଗାଁ ପାଖ ଦେବୀନଦୀରୁ ବାହାରି, ବରଡ଼ା ଗାଁ ତଳ ଦେଇ, ସାହାଡ଼ାବେଦୀ ଗାଁ ପାଖ ସମୁଦ୍ର ସଙ୍ଗେ ମିଶିଛି। ଲମ୍ୱାରେ ବଡ଼ ନ ହେଲେ ମଧ ନଈଟି କମ୍ ନୁହେଁ। ବେଶ୍ ଗଭୀର ଜୁଆରିଆ ନଈ। ସମୁଦ୍ରରେ ଜୁଆର ଆସିଲେ ନଈ ପାଣି ବଢ଼େ। ତା'ରି ସାଙ୍ଗରେ ସମୁଦ୍ରରୁ ଆସନ୍ତି କେତେ ପ୍ରକାର ମାଛ କଙ୍କଡ଼ା। ପାଖ ଗାଁର ଲୋକମାନଙ୍କର ଭାତ ହାଣ୍ଡି ଏଇ ନଈ। ହୁଲି ଡଙ୍ଗା ଖଣ୍ଡେ ଧରି ନଈରେ କେଉଟମାନଙ୍କର ଖେଳ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ। ତା'ରି ଭିତରେ ଜାଲ, ପୋଲୁହର କାରବାର। ସନ୍ଧ୍ୟା ବେଳକୁ ଯାହା ମିଳିଲା ବାଲିକୁଦା ବେପାରୀଙ୍କୁ ଦେଇ ନଗଦ ପଇସା ପାଆନ୍ତି। ନଦୀ ଉପରକୁ ବିଲ। ଆଗେ ଏ ବିଲ ସବୁ ପଡ଼ିଆ ପଡ଼ିଥିଲା। ଜମିଦାରମାନେ, ଏ ଅଞ୍ଚଳକୁ ପଶୁ ନ ଥିଲେ। ଅଳ୍ପ କେତେ ଅଞ୍ଚଳରେ ଧାନ, ମୁଗ ଚାଷ କରୁଥିଲେ। ମାତ୍ର ସ୍ୱାଧିନତା ପରେ ଏଇ ସମୁଦ୍ର କୂଳରେ ନୂଆ ଲୋକମାନେ ବସବାସ ଆରମ୍ଭ କଲେ। ଦେଶ ବିଭାଜନ ପରେ ବଙ୍ଗଳାଦେଶରୁ ଆସି ମେଦିନାପୁର, ବର୍ଦ୍ଧମାନ ଜିଲ୍ଲାରେ ଡେରା ପକାଇଥିବା ବାଂଲାଦେଶୀମାନେ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ବସବାସ ଆରମ୍ଭ କଲେ ଏବଂ ପତିତ ଜମିକୁ ଚାଷ କରି କ୍ଷେତରେ ପରିଣତ କଲେ। ତା' ସଙ୍ଗେ ସଙ୍ଗେ ସମୁଦ୍ର ମୁହାଣ, ତଥା ସମୁଦ୍ର ସଙ୍ଗେ ମିଶିଥିବା ଜୁଆରିଆ ନଈରୁ ମାଛ ମାରି ରୋଜଗାରକ୍ଷମ ହୋଇପାରିଲେ।

ସୁକୁମାର ମଣ୍ଡଳର ବାପା ହରିହର ମଣ୍ଡଳ ପ୍ରାୟ ବହୁବର୍ଷ ତଳେ ମେଦିନପୁର ଜିଲ୍ଲାରୁ ଆସି ଆଠଗରିଆ ଗାଁରେ ଘର କରିଥିଲା। କାଠ ଗଡ଼ି ନଈ ଉପରେ ତା'ର ଚାଳ ଘର। ହରିହର ମଣ୍ଡଳ ଏଠି ରହିବା ପରେ ସେଇ ଅଞ୍ଚଳରୁ ଆଉ କେତେକ ରିଫ୍ୟୁଜି ବଙ୍ଗାଳୀ ପରିବାର ଆସି ଘରକରି ରହିଲେ। ଅନନ୍ତ ମହାନ୍ତ, ଗୋରା ସିଂହ, ଏମିତି ଆଠ ଘରକୁ ନେଇ ଏଇ ଆଠଘରିଆ ଗାଁ। ସୁକୁମାର ଘର ଠାରୁ ଅନନ୍ତ ଘର ଅଳ୍ପ ଦୂରରେ। ସମସ୍ତଙ୍କ ଘର ଚାରିପଟେ ଧାନଜମି, ବାଡ଼ି, ବଗିଚା। ବଗିଚାରେ ନଡ଼ିଆ, ଲଙ୍କା ଆମ୍ବ, ଝାଉଁଗଛ। କିଏ

କିମିତି ଆମ୍ବ ପଣସ ଗଛ ମଧ୍ୟ ବାଡ଼ି ଚାରିପଟେ ଲଗାଇଥିଲେ। ବାଉଁଶ ବୁଦା, ଗୋଟେ ଦୁଇଟା ସମସ୍ତଙ୍କ ବାଡ଼ିରେ।

ସୁକୁମାରର ଆଠ ଦଶ ବଖରା ଚାଳଘର। ଘର ଚାରିପଟେ ବିରାଟ ବାଡ଼ି। ବାଡ଼ି ତଳକୁ ଧାନ ବିଲ। ବିଲରେ ପାଚି ଆସୁଥିବା ଧାନର କେଣ୍ଡା ଲହଡ଼ି ଭାଙ୍ଗୁଥିଲା। ଘରେ ତା'ର ତିନି ତିନିଟା ଯୁଆନ ପୁଅ, ଦୁଇ ଜ୍ୱାଇଁ, ବି'ଝିଅ, ନାତି, ନାତୁଣୀ ନଅ ଦଶ ପ୍ରାଣୀ। ସମସ୍ତେ ଚାଷ କରନ୍ତି, ମାଛ ମାରନ୍ତି। ଘର ପାଖ କାଠ ଗଡ଼ି ନଈରେ ତାଙ୍କର ଖଣ୍ଡେ ଭୁଟ୍‌ଭୁଟି ଚାଲେ। ଏଇ କେତେବର୍ଷ ହେଲା, ବାଗ୍‌ଦା ଚୁଙ୍ଗୁଡ଼ିର ଚାହିଦା ଚାରିଆଡ଼େ ବଢ଼ିଯାଇଥିବା ଯୋଗୁଁ ସୁକୁମାରର ପୁଅ ନିଶିକାନ୍ତ, ଜ୍ୱାଇଁ ରାମ, ସମସ୍ତେ ମିଶି ଦଶ ଏଚ.ପି.ର ଗୋଟେ ଡିଜେଲ ଇଞ୍ଜିନ୍ କିଣି ଡଙ୍ଗାରେ ଲଗେଇଥିଲେ। ସେଇ ଡଙ୍ଗାରେ ସକାଳୁ କାଠଗଡ଼ି ନଈ ଦେଇ ବାହାରି ଯାଉଥିଲେ ସମୁଦ୍ର ଆଡ଼େ। ଜାଲରେ ଯାହା ମାଛ, ଚିଙ୍ଗୁଡ଼ି ପଡ଼ିଲା ପାରାଦ୍ୱୀପ ଗଡ଼ରେ ଥିବା ଚିଙ୍ଗୁଡ଼ି ବ୍ୟବସାୟୀ ସୂର୍ଯ୍ୟୋ ଉଦ୍ୟୋଗ କିମ୍ବା ଫାଲକନ୍ କମ୍ପାନୀରେ ବିକି ସନ୍ଧ୍ୟାକୁ ଫେରୁଥିଲେ। ବେକାର ବେଳେ କମ୍ପାନୀମାନେ ସେମାନଙ୍କୁ ଜାଲ କିଣିବା, ଡଙ୍ଗା ପାଇଁ ହଜାର ହଜାର ଟଙ୍କା ବଇନା ଦେଇଥାନ୍ତି। ବର୍ଷେ ହେଲା ସୁକୁମାରର ବଡ଼ପୁଅ ନିଶିକାନ୍ତ ଭୁଟ୍‌ଭୁଟି କିଣି ବେଶ୍ ଭଲ ବ୍ୟବସାୟ କରୁଥିଲା। ସବୁ ଭାଇ, ଭିଣୋଇମାନେ ମିଶି ଚିଙ୍ଗୁଡ଼ି ବ୍ୟବସାୟ ଆରମ୍ଭ କରିଥିଲେ। ବର୍ଷକ ଭିତରେ ସେମାନେ କିଛି ପଇସା କଲାପରେ, ଘର ପାଇଁ ଟି.ଭି. ରେଡ଼ିଓ କିଣିଲେ। ପିଲାଙ୍କ ପାଇଁ ଭଲ ଡ୍ରେସ କରିପାରିଥିଲେ। ନିଶିକାନ୍ତ ପୁଅ ସଙ୍ଗେ ସଙ୍ଗେ ତା' ଭଉଣୀର ଝିଅ ମିଶି ପାଖ ଗାଁ ସ୍କୁଲକୁ ପାଠ ପଢ଼ିବା ପାଇଁ ଯାଉଥିଲେ। ସବୁ ଠିକ୍ ଚାଲିଥିଲା। ସୁକୁମାର ମଣ୍ଡଳ, ସନ୍ଧ୍ୟାହେଲେ କାଠ ଗଡ଼ି ନଈ ବନ୍ଧ ଉପରେ ବସି ତା'ର ହୁକାରୁ ଦୁଇଦମ୍ ଟାଣି ସାରିଲା ପରେ, ଚାହେଁ ଏଇ କାଠ ଗଡ଼ି ନଈ ଆଡ଼େ। ଏଇ ନଈ ତାଙ୍କର ମା'। ହୁକା ଟାଣିବା ଭିତରେ ସେ ଫେରିଯାଏ ତା'ର ବାପ ସମୟକୁ। କି ଅବସ୍ଥାରେ ସେମାନେ ଏଠାକୁ ଆସିଥିଲେ। ବାଟ ନ ଥିଲା କି ଘାଟ ନ ଥିଲା। ଚାରିଆଡ଼େ ହେନ୍ତାଳ ବଣ -ସନ୍ତସନ୍ତିଆ ଜାଗା। ସାପ, ଗୋଧିର ରାଜ୍ୟ। ନଈକୁ ଓହ୍ଲାଇ ପଡ଼ିଲେ ମଣିଷ ଖିଆ କୁମ୍ଭୀର ଟାଣି ନେଉଥିଲା।

ତା' ବାପ ସବୁବେଳେ ତାକୁ ତାଗିଦ୍ କରୁଥିଲା। କାହିଁଗଲା ସେ ଯୁଗ। ଏବେ କୁମ୍ଭୀରଟେ ଦେଖିବା ସପନ ହେଲାଣି। ଯୁଗ ବଦଳି ଗଲା। କାଠ ଗଡ଼ି ନଈକୂଳେ କୂଳେ ଛୋଟ ଲୁଣାବନ୍ଧ ହୋଇଗଲାଣି। ଚାଲି ଚାଲି କାହିଁକି ସାଇକେଲରେ ଅନନ୍ତପୁର ପଞ୍ଚାୟତ ହେଡ଼କ୍ୱାର୍ଟର ପର୍ଯ୍ୟନ୍ତ ଯାଇ ହେଉଛି। ପିଲାମାନେ ହାଇସ୍କୁଲକୁ ପାଠ ପଢ଼ିବାକୁ ଗଲେଣି। ହୁକାରେ ନିଆଁ ନଦିଲା ବେଳେ, "ସେ ଭାବେ ସବୁ ଏଇ କାଠଗଡ଼ି ମା" ର ଦୟା। ତା'ରି ଲାଗି ତ ତା'ର ପରିବାର ଆଜି ଏତେ ବଡ଼ ହୋଇ ପାରିଛି। ଘରେ ଟି.ଭି. ନଈରେ ଭୁଟ୍‌ଭୁଟି, ଚାରିପାଖେ ଧାନକ୍ଷେତ, ନାତି ନାତୁଣୀମାନେ ଗଲେଣି ପାଠ ପଢ଼ିବାକୁ ଆଉ କ'ଣ ଦରକାର? ପାଖ ବାଲିବନ୍ତ ଝାଉଁ କ'ଣ ତଳକୁ ସୂର୍ଯ୍ୟ ବୁଡ଼ିଗଲାବେଳେ, ସେ ମୁଣ୍ଡ ନୁଆଇଁ ପ୍ରଣାମ କରୁଥିଲା। ମନାସୁ ଥିଲା ସମସ୍ତଙ୍କ ଆଗରେ, ସୁଖର ସଂସାର ଭିତରେ ଥାଇ ସେ, ଆରପୁରକୁ ଚାଲିଯିବ।

ଖିଆ ସାରି ଗୋଟେ ଦଫା ଲୋକ ଉଠିଲେଣି। ପୁଲିସ୍ ଅଫିସରଙ୍କ ସାଙ୍ଗରେ ଆସିଥିବା ମହିଳାମାନେ ପିଲାମାନଙ୍କୁ ବିସ୍କୁଟ୍ ବାଣ୍ଟି ଗଛମୂଳେ ଠିଆ ହୋଇଥାନ୍ତି। ଚାରିପଟେ ତିନି ଚାରିଶହ ପିଲା ବିସ୍କୁଟ କେତେ ଖଣ୍ଡ ପାଇଁ ଘେରିଯାଇ ଠେଲାପେଲା ହେଉଥାନ୍ତି। ଏଣେ ଆଉ ଗୋଟେ ଯାଗାରେ ପୁଲିସ୍ ତରଫରୁ ପୁରୁଣା ଲୁଗା, ନୂଆ କମ୍ବଳ, ଶାଢ଼ୀ ବଣ୍ଟା ହେଉଥାଏ। ଅଧା ଲଙ୍ଗୁଳି ଯୁବତୀ, ବୋହୂ ଝିଅମାନେ, ପିନ୍ଧିଥିବା ଅଧା ଛିଣ୍ଡା ଲୁଗା ଖଣ୍ଡକୁ ମୁହଁରେ ଦେଇ ଲାଇନ୍‌ରେ ଠିଆ ହୋଇଥାନ୍ତି। ସୁକୁମାରର ନଜର ପଡ଼ିଲା ଗୋରା ସିଂହ ବୋହୂ ବନିତା ଆଡ଼େ। ବନିତା ଠିଆ ହୋଇଛି ଲାଇନ୍‌ରେ, କାଖରେ ତା' ବର୍ଷକର ଛୁଆ। ଆଖି ଫେରାଇ ଆଣିଲା, ସୁକୁମାର। ଦୁଇ ଆଖିରେ ଭରିଗଲା ଲୁହ। ସେ ଆଉ ଚାହିଁ ପାରିଲାନି, ମାଇପେମାନେ ଦେଇଥିବା ଲାଇନ୍ ଆଡ଼େ। କଟାହୋଇ ମଲା ମଣିଷ ପରି ପଡ଼ିଥିବା ବରଗଛର ଗଣ୍ଡିକୁ କୁଣ୍ଢାଇ ଧରି ସୁକୁମାର କାନ୍ଦୁଥିଲା, ଏଇମାନଙ୍କୁ ବଞ୍ଚେଇବାକୁ ଯାଇ ତା'ର ପରିବାର ସମୂଳେ ଭାସିଗଲେ।

ସେଇ ଦିନର କଥା ତା' ଆଖି ଆଗରେ ଭାସିଉଠିଲା। ଆଗ ଦିନରୁ (ଗୁରୁବାର) ସେ ଟି.ଭି.ରେ ଶୁଣିଥିଲା ଝଡ଼, ତୋଫାନ ହେବ। ଝଡ଼ ତୋଫାନ

ପାରାଦ୍ୱୀପ ଦେଇ କଲିକତା ଆଡେ ଚାଲିଯିବ। ସେଦିନ ସକାଳୁ ସକାଳୁ, ପୁଅ ଜ୍ୱାଇଁମାନଙ୍କୁ ଡାକି ସେ ତାଗିଦ୍ କରି ଦେଇଥିଲା, ସମୁଦ୍ର ଆଡ଼େ ଭୁଟ୍‌ଭୁଟି ନେଇ ନ ଯିବାକୁ। ବର୍ଷା ତୋଫାନ୍ ହେବ, ଯିବା ଦରକାର ନାହିଁ। ତା'ରି କଥାରେ ସମସ୍ତେ ରହିଥିଲେ ଘରେ। ଘର ପାଖ, କାଠଗଡ଼ି ନଈରେ ବାନ୍ଧିଦେଲେ ଭୁଟ୍‌ଭୁଟିକୁ। ଗୁରୁବାର ଦିନ ରାତି ଦଶଟା ବେଳକୁ ପବନ ବୋହିବାକୁ ଆରମ୍ଭ କଲା। ସୁକୁମାର ମନେ ମନେ ଚିନ୍ତା କରିଥିଲା ଏମିତି ଝଡ଼ ବତାସ ଆସେ, ରେଡ଼ିଓ, ଟି.ଭି.ରେ କୁହନ୍ତି, ସମୁଦ୍ର ଜୁଆରିଆ ହୋଇ ଉଠେ। ଦିନକ ପାଇଁ ସେମାନେ ସମୁଦ୍ରକୁ ନ ଯାଇ ଘରେ ରୁହନ୍ତି। ଝଡ଼ ବତାସ ବଢ଼େ ଆଉ ତା' ବାଟରେ ଚାଲିଯାଏ। ଗଲାପରେ ସେମାନେ ଦେଖନ୍ତି କେତେ ଗଛର ଡାଳ ଭାଙ୍ଗି ପଡ଼ିଥାଏ କିମ୍ବା ଧାନ ବିଲରେ ଲୁଣିପାଣି ମାଡ଼ିଯାଏ। ସେଦିନ ତୋଫାନିଆ ରାତିରେ ସମସ୍ତ ଶୋଇଗଲେ। ସୁକୁମାର, ଘର ବାହାର ପିଣ୍ଡାରେ ବସିଥାଏ। ପିଲାମାନେ ଶୋଇଲା ପରେ, ସେ ନଈକୂଳକୁ ଆସିଲା, ଦେଖିଲା ପବନର ଗତି ବଢୁଛି। ନଈ ଜୁଆରିଆ ହୋଇ ଉଠିଲାଣି। ଗୋରା ସିଂହ ଆଉ ରାମ ମଣ୍ଡଳ ଘର ଆଡ଼େ ଚାହିଁଲା। କାହାର ସୋର୍ ଶବ୍ଦ ନାହିଁ, କେବଳ ଯାହା ପବନର ସାଇଁ ସାଇଁ ଶବ୍ଦ। ନଈକୂଳରେ ବନ୍ଧା ହୋଇଥିବା ଭୁଟ୍‌ଭୁଟିକୁ ଦେଖିନେଲା। ଖୁଣ୍ଟ ଦେହରେ ଦଉଡ଼ାକୁ ଆଉ ଥରେ ଦି ଘେରା ବାନ୍ଧିଦେଇ ଘରକୁ ଫେରି ବାହାର ପଟ ପିଣ୍ଡା ଉପରେ ମଶିଣା ଖଣ୍ଡେ ପାରି ଶୋଇଲା। ଯେତେ ଚେଷ୍ଟା କଲେବି ନିଦ ଆସୁ ନ ଥାଏ। ପବନର ଗତି ବଢ଼ିବାରେ ଲାଗିଲା। ଅକ୍ଟୋବର ୨୯ ତା'ରିଖ ସକାଳ ହେଲା। ସକାଳ ବେଳକୁ କାଠ ଗଡ଼ି ନଈର ପାଣି, ବନ୍ଧ ପାଖକୁ ଲାଗିଗଲାଣି। ପବନ ସାଙ୍ଗକୁ ବର୍ଷା ବି ଆରମ୍ଭ ହୋଇଗଲାଣି। ପବନରେ ତା' ଘରର ଚାଳ କେତେକାଂଶରେ ଉଡ଼ିଯାଇଥାଏ। ତଥାପି ପିଲାମାନଙ୍କ ନିଦ ଭାଙ୍ଗି ନ ଥାଏ। ଦୁଆର ମୁହଁରେ ଠିଆ ହୋଇ ସେ ସମସ୍ତଙ୍କୁ ଉଠାଇଲା। ପୁଅ, ଜ୍ୱାଇଁ ସମସ୍ତେ ଉଠିଲେ। ଠିକ୍ ସକାଳ ନଅଟା ବେଳକୁ ପବନ ଖୁବ୍ ଜୋରରେ ବୋହିବାକୁ ଆରମ୍ଭ କଲା। ପ୍ରବଳ ବାତ୍ୟାରେ, ନଡ଼ିଆ ଗଛଗୁଡ଼ାକ ଉପୁଡ଼ି ପଡ଼ିଲା, ଝାଉଁ ଗଛ ଭାଙ୍ଗି ପଡ଼ିଲା। ପିଲାଛୁଆ ସମସ୍ତେ ଘରୁ ବାହାରି ଆସିଲେ। ଏଣେ କାଠଗଡ଼ି ନଈ ବଢ଼ି ଘେରିବନ୍ଧ

ଉପରେ ପାଣି ଆଣ୍ଠୁଏ ହେଲାଣି। ସୁକୁମାର ବୁଢ଼ା, ନାତି, ନାତୁଣୀ, ଝିଅ, ବୋହୂଙ୍କୁ ଘରୁ ଡାକିଲା। ଏଣେ ବର୍ଷା ସାଙ୍ଗକୁ ପ୍ରବଳ ବାତ୍ୟା-ସେମାନଙ୍କୁ ଠିଆ କରାଇ ଦେଉ ନ ଥାଏ। ଘର ଭିତରେ ପାଣି ପଶିଲା। ଆଉ କିଛି ବାଟ ନ ପାଇ ସେମାନେ ବାହାରେ ଠିଆ ହେଲେ। ଏତିକି ବେଳକୁ ଗୋରା ସିଂହ ଘରେ କାନ୍ଦ ବୋବାଳି, ହୋ ହଲ୍ଲା ଶୁଣାଗଲା। ତା' ଘର ସୁକୁମାର ଘରଠାରୁ ତଳ ଜାଗାରେ ଥିବା ଯୋଗୁଁ ତା' ଘରେ ସମୁଦ୍ର ଜୁଆର ପଶି, ତା'ର ଚାଳ ଭାସିବାରେ ଲାଗିଲା। ଗୋରା ସିଂହର ପାଟି ଶୁଣି, ସୁକୁମାରର ପୁଅ ନିଶିକାନ୍ତ ଆଉ ଜ୍ୱାଇଁ ରାମ ଗୋରା ସିଂହ ଘରକୁ ଯାଇ ତାଙ୍କ ପିଲାମାନଙ୍କୁ ଉଚ୍ଚା ଜାଗାକୁ ନେଇ ଯିବା ପାଇଁ ବାହାରି ପଡ଼ିଲେ। ପୁଅ, ଜ୍ୱାଇଁ, ପାଣିରେ ପଶି ଗୋରା ସିଂହ ଘରେ ପହଞ୍ଚିଲେ। ସମୁଦ୍ର ଜୁଆରରେ ଭାସି ଯାଉଥିବା ଗୋରା ସିଂହ ପରିବାର ଏବଂ ରାମ ମଣ୍ଡଳ ପିଲାମାନଙ୍କୁ ନେଇ ଖଣ୍ଡେ ଦୂରରେ ଥିବା ଢିପ ଯାଗାରେ ଛାଡ଼ି ଦେଲେ। ସୁକୁମାର ଠିଆହୋଇଥିବା ଜାଗାରେ ପବନ ସାଙ୍ଗକୁ ପାଣି ବଢ଼ିବାରେ ଲାଗିଲା। ଠିକ୍ ଏଗାରଟା ବେଳକୁ ସମୁଦ୍ର କୋଡ଼ିଏ ଫୁଟ ଉଚ୍ଚରେ ମାଡ଼ି ଆସିଲା। ପ୍ରାଣ ବିକଳରେ ସୁକୁମାର ନାତି ନାତୁଣୀମାନଙ୍କୁ କାନ୍ଧରେ ବସାଇ ଭାସି ଯାଉଥିବା ତା' ଘର ଚାଳ ଉପରେ ବସାଇଦେଲା। ସେମାନଙ୍କୁ ଘରର ଚାଳ ଉପରେ ବସାଇ ଦେଇ ଫେରିଲା ବେଳକୁ ସମୁଦ୍ର ଢେଉରେ ଦି ବୋହୂ, ଝିଅ ତିନିଟା ଭାସିଗଲେଣି। ପାଣିରେ ପହଁରି ପହଁରି ଭାଙ୍ଗି ପଡ଼ିଥିବା ନଡ଼ିଆ ଗଛର ଗଣ୍ଡିକୁ ଧରି ସେ ଦେଖିଲା ତା' ବଡ଼ ଝିଅଟା ଖଣ୍ଡେ ଦୂରରେ ଢେଉ ମାଡ଼ରେ ବୁଡ଼ି ଯାଉଛି। ତା'ର ହାତ ଦୁଇଟା କିଛି ସମୟ ପାଇଁ ସେ ଦେଖିଥିଲା। ନଡ଼ିଆ ଗଛକୁ କୁଣ୍ଢାଇ ସେ ଦେଖୁଥିଲା ତା' ନାତି, ନାତୁଣୀମାନେ ଚାଳ ଉପରେ ବସି କାଠଗଡ଼ି ନଈ ମଝିରେ ପଶିଲେ। ଅଳ୍ପ ସମୟ ଭିତରେ ଢେଉ ସହ ପବନ ମାଡ଼ରେ ଚାଳ ଛିନ୍ ଛତର ହୋଇଗଲା। ପିଲା ପାଞ୍ଚଟା ଢେଉ ଭିତରେ କେଉଁଆଡ଼େ ଭାସିଗଲେ। ଦି ପୁଅ, ପିଲାମାନଙ୍କୁ ବଞ୍ଚାଇବାକୁ ଯାଇ ଆଉ ଫେରିଲେନି। ସେମାନେ ମଧ ସେଇ ପ୍ରଳୟଙ୍କରୀ ଜୁଆର ମଧରେ ସବୁଦିନ ପାଇଁ ରହିଗଲେ। ସୁକୁମାର ନଡ଼ିଆ ଗଛର ଗଣ୍ଡିକୁ କୁଣ୍ଢାଇ ଧରି କେବଳ ବଲ ବଲ କରି ଚାହିଁଥିଲା। ଚାରିଆଡ଼େ ପ୍ରଳୟର ତାଣ୍ଡବଲୀଳା, ଆର୍ତ୍ତ ଚିତ୍କାର। ପବନର ଗର୍ଜନ ଆଉ ପାଣି ମାଡ଼ରେ

ସେ ଅଧା ଅଚେତ ଅବସ୍ଥାରେ ଜୀବନ ବଞ୍ଚାଇବା ପାଇଁ ନଡ଼ିଆ ଗଛ ଗଣ୍ଡିକୁ କୁଣ୍ଢାଇ ଧରିଥାଏ। ଅଧାବୁଡ଼ା ନଡ଼ିଆ ଗଛ ଉପରେ ରହି ସୁକୁମାର କେବଳ ଦେଖୁଥିଲା - ମହା ପ୍ରଳୟର ତାଣ୍ଡବଲୀଳା। ଶହ ଶହ ଗୋରୁ, ମଇଁଷି ତା'ରି ଆଗରେ ଭାସି ଯାଉଥାନ୍ତି। ତା'ରି ଗାଁର ଝିଅ ବୋହୂ ଯୁଆନ୍ ଟୋକା ଯେଉଁମାନେ ସମୁଦ୍ରଗର୍ଭରେ ଦିନ ଦିନ ଧରି ଢେଉ ଭାଙ୍ଗୁଥିଲେ, ସେମାନେ ଭାସି ଯାଉଥାନ୍ତି। କାହା ହାତ ଦିଶୁଥାଏ ତ କାହାର ଖୋଲି ଯାଇଥିବା ଲୁଗା, ଗାମୁଛା ଭାସି ଯାଉଥାଏ ତା'ରି ପାଖଦେଇ।

ଆସ୍ତେ ଆସ୍ତେ ସୂର୍ଯ୍ୟ ଅସ୍ତ ହେଲେ। ସମୁଦ୍ରର ଢେଉ କମିଥିଲେ ମଧ୍ୟ ପାଣି ସେମିତି ଗଛ ଅଧା ପର୍ଯ୍ୟନ୍ତ ଲାଗି ରହିଥାଏ। ପବନର ଗତି କମି ନ ଥାଏ। ପାଣି ମାଡ଼ରେ ସୁକୁମାର ବଞ୍ଚିବାର ଆଶା ଛାଡ଼ିଦେଇଥିଲାବେଳେ କେବଳ ଗଛକୁ କୁଣ୍ଢେଇ ଧରି ପଡ଼ିଥାଏ ବଞ୍ଚିବାର ଆଶା ନେଇ। ଶନିବାର ଦିନ ସକାଳ ହେଲା। ଝଡ଼, ବାତ୍ୟା, ସମୁଦ୍ର ଜୁଆର ଚାଲି ଯାଇଥାଏ। ସମୁଦ୍ରରୁ ମାଡ଼ି ଆସୁଥିବା ଲୁଣିପାଣି କାଠଗଡ଼ି ନଈ ପାଖରୁ କମି ଯାଇଥାଏ। ତଳୁ କାହାର ପାଟି ଶୁଣି, ସୁକୁମାର ଚେତା ପାଇଲା। ଗଛକୁ କୁଣ୍ଢେଇ ଧରିଥିଲେ ମଧ୍ୟ ତା'ର ଚେତା ନ ଥିଲା। ପାଟି ଶୁଣି, ତଳକୁ ଚାହିଁ ଦେଖିଲା, ତା' ପୁଅ ନିଶିକାନ୍ତ ତଳେ ଠିଆ ହୋଇ ତାକୁ ଡାକୁଛି। ତାକୁ ଦେଖି ସୁକୁମାରର ହାତ ଗଛ ଦେହରୁ ଖସିଗଲା, ସେ ଅଣ୍ଟେ ପାଣି ଉପରେ ଦାଉଁକିନା ପଡ଼ି କାନ୍ଦିବାରେ ଲାଗିଲା। କିଛି କହିପାରୁ ନ ଥାଏ। ଦୁହେଁ ମିଶି ଗଲେ ଘରଆଡ଼େ। ଘର ବୋଲି ଆଉ କିଛି ନ ଥିଲା, ଖାଲି ଥିଲା ମାଟିରେ ମିଶିଯାଇଥିବା ଭଙ୍ଗା କାନ୍ଥର ଚିହ୍ନ, ଭାଙ୍ଗି ପଡ଼ିଥିବା କେତେଟା ଲଙ୍କା ଆମ୍ବ, ନଡ଼ିଆ ଗଛ। ସୁକୁମାର ପାଟିକରି ତା' ନାତି, ନାତୁଣୀ, ଝିଅ, ବୋହୂ ନାଁ ଧରି ବହେ ଡାକିଲା। ପରେ ପରେ ବେହୋସ୍ ହୋଇ ସେଇ କାଦୁଅ ଉପରେ ଲୋଟି ପଡ଼ିଲା। ପୁଅ ନିଶିକାନ୍ତ ପାଣି ଛାଟି ତାକୁ ଚେତା କଲା। ସୁକୁମାର ପରିବାରର ପନ୍ଦର ଜଣଙ୍କ ମଧ୍ୟରୁ ତିନିଜଣ ବଞ୍ଚି ଯାଇଥିଲେ।

ନିଶିକାନ୍ତ ଚାହିଁଥିଲା ରାମ ସିଂହ ଆଡ଼େ। ଅଳ୍ପ ଦୂରରେ ସେମାନେ ଉଦ୍ଧାର କରି ନିରାପଦ ସ୍ଥାନରେ ଛାଡ଼ି ଆସିଥିବା ଗୋରା ସିଂହର ପିଲାମାନ

ପାଣିରେ ପଶି ଆସୁଥାନ୍ତି ତାଙ୍କରି ଘର ଆଡ଼େ। ନିଶିକାନ୍ତ ସେମାନଙ୍କ ଆଡ଼େ ଚାହିଁ ମନେ ମନେ ଖୋଜୁଥିଲା ତା'ର ସେଇ ଆଠବର୍ଷର ପୁଅ କୁନା ଆଉ ବାରବର୍ଷର ଝିଅ ସୁରମାକୁ। ମନ ବୁଝୁ ନ ଥିଲା ସେମାନଙ୍କର। ନଦୀ ବନ୍ଧରେ ଚାଲି ଚାଲି ଖୋଜୁଥିଲେ ସେମାନଙ୍କର ପିଲାମାନଙ୍କୁ। ସୁକୁମାର ମଣ୍ଡଳ ବସିଥିଲା ଭଙ୍ଗା କାନ୍ଥର କାଦୁଅ ଗଦା ଉପରେ।

ତେନ୍ତୁଳି ବେରେଣିର ସରପଞ୍ଚ ପାଟିକରି ପୁଲିସ ମହିଳା ସଂଘର ସଭାନେତ୍ରୀଙ୍କୁ କହିଲେ "ମା' ସୁକୁମାର ମଣ୍ଡଳର ସମସ୍ତେ ଚାଲିଗଲେ - କେବଳ ପୁଅ, ଜ୍ୱାଇଁ ଯେଉଁମାନେ ଅନ୍ୟମାନଙ୍କୁ ଉଦ୍ଧାର କରିବାକୁ ଯାଇଥିଲେ, ସେ ଦୁହେଁ ବଞ୍ଚିଗଲେ। ଭଲ ମାଛ ବ୍ୟବସାୟୀ, ବଡ଼ ଚାଷୀ ଥିଲା ବୁଢାକୁ ଖଣ୍ଡେ କମ୍ବଳ ଦିଅନ୍ତୁ।" ଭଙ୍ଗା ବରଗଛର ଗଣ୍ଡିକୁ ଧରି ସୁକୁମାର ମଣ୍ଡଳ ବଲବଲ କରି ଚାହିଁଥିଲା, ତାଙ୍କରି ଆଡ଼େ। କମଳ ଖଣ୍ଡେ ତା' ହାତରେ ଦେଇ, ସେମାନେ ଚାଲି ଯାଇଥିଲେ। ପୁରୁଣା କମ୍ବଳ ଖଣ୍ଡିକ ତା' ହାତ ଭିତରେ ଥିରି ଉଠୁଥିଲା। ଏତେ ପାଟିତୁଣ୍ଡ ଭିତରେ ସେ କିଛି ଶୁଣିପାରୁ ନ ଥିଲା। ତା' କାନ ପାଖରେ ସେପାରିରୁ ତା' ନାତି, ନାତୁଣୀଙ୍କ ସେ ଦିନର ଆର୍ତ୍ତ ଚିତ୍କାର କେବଳ ଶୁଣାଯାଉଥିଲା।

—୦୦୦—

# ଭଙ୍ଗା ବାଉଁଶ

ଗାଁଟି ନାଁ ଦେବଣି। କେଉଁ ଯୁଗରୁ କିଏ ଏ ଗାଁ ନାଁ ଦେଇଥିଲା ଦେବଣି କେହି କହିପାରିବେନି। ଛୋଟିଆ ଗାଁଟିଏ। ଗାଁ ପାଖରେ କାଠଗଡ଼ି ନଈ ବହିଯାଇ ଅଳ୍ପଦୂରରେ ସମୁଦ୍ରରେ ମିଶିଯାଇଛି। ଗାଁ ପାଖକୁ ଲାଗି ନଈବନ୍ଧ। ବନ୍ଧ ତଳେ ମାଟି କାନ୍ଥ ଉପରେ ଚାଳଛପର ଘର। ଗାଁର ସବୁ ଲୋକ ଆଗେ ଥିଲେ ପ୍ରବାସୀ। ଏବେ କେତେ ବର୍ଷହେଲା ବସବାସ କରି ନିବାସୀ ହୋଇଗଲେଣି। ସମୁଦ୍ର ଏବଂ ନଈ ମୁହାଣ ପାଖରୁ ଛୋଟ ଛୋଟ ଡଙ୍ଗାରେ ମାଛ ଧରିବା ଏମାନଙ୍କର ବ୍ୟବସାୟ। କେଉଁ କାଳରୁ ସେମାନେ ବଙ୍ଗଳା ଦେଶରୁ ଚାଲି ଆସି ଏଇ ନଦୀ ମୁହାଣ ପାଖରେ ଘର କରି ରହିଲେଣି। ନଦୀକୂଳ, ସମୁଦ୍ର ମୁହାଣର ସନ୍ତସନ୍ତିଆ ଜମି ଉପରେ ଘର। ଘର ପାଖକୁ ଲାଗିଥିବା ହେନ୍ତାଳ ବଣକୁ ଆବାଦ କରି ଧାନ ଜମି କରିସାରିଲେଣି। ଛୋଟ ଛୋଟ ଚାଳଘର ଚାରିପଟେ ନଡ଼ିଆ ଗଛ। ଲୁଣା ପାଣିରେ ନଡ଼ିଆ ଗଛ ଛଡ଼ା ଆଉ ବା କେଉଁ ଗଛ ହୁଅନ୍ତା। କାଠ ଗଡ଼ି ନଈଟି ଅଙ୍କବଙ୍କା ହୋଇ ଗାଁ ପାଖ ଦେଇ ବହିଯାଇଛି। ଗାଁର ଲୋକମାନଙ୍କ ପାଇଁ କାଠ ଗଡ଼ି ନଈ ସବୁ କିଛି। ଆଗେ କୁଆଡ଼େ ଖଣ୍ଡେ କାଠ ଗଡ଼ ପକାଇଦେଲେ, ଏଇ ନଈର ଏପଟରୁ ସେପଟକୁ ଚାଲିଯାଇ ହେଉଥିଲା। ସେଇଥିପାଇଁ, ସେକାଳର ଲୋକ ନଈ ନାଁ କାଠଗଡ଼ି ରଖି ଯାଇଛନ୍ତି। ଏବେ କିନ୍ତୁ କାଠଗଡ଼ିକୁ ଡଙ୍ଗା ନ ହେଲେ ପାରିହେବା କଷ୍ଟକର। ସେକାଳର ଛୋଟିଆ କାଠଗଡ଼ିର କଳେବର ବହୁତ ବଢ଼ିଗଲାଣି।

ରଘୁ ମାଇତିର ଘର ଏଇ ଗାଁ ମୁଣ୍ଡରେ। ନଦୀ ତଳକୁ ତା'ର ଛୋଟିଆ ଚାଳ ଘର। ଘର ପଛପଟେ ତା' ବାପ ଚାରିବୁଦା ନଡ଼ିଆ ଗଛ ଲଗେଇଥିଲା, ଏବେ ଫଳିଲାଣି। ତା' ବାପ ବଙ୍ଗଳାଦେଶରୁ ଅନ୍ୟମାନଙ୍କ ସଙ୍ଗରେ ଆସିଥିଲାବେଳେ, ଏଇ ଗାଁରେ ଘର ନ ଥିଲା କି ଗଛ ନ ଥିଲା। ସମୁଦ୍ର ବାଲିବନ୍ତ ପରେ ନଈକୂଳରେ ହେନ୍ତାଳବଣ। ତା' ବାପ ପଶୁପତି ଏଇ ଗାଁରେ ଖଣ୍ଡେ ଝାଟିମାଟି ଘର କଲା। ତାଙ୍କରି ଗାଁ ଭାଇମାନେ ମହାକାଳପଡ଼ା ଥାନା ଅଞ୍ଚଳର ରାମନଗର, ଖିରୀନାସୀ ଆଡ଼େ ରହୁଥିଲେ। ସେମାନେ ମଧ୍ୟ ସେମିତି

ବଙ୍ଗଳାଦେଶରୁ ଆସି ରାମ ନଗରରେ କେତେ କାଳରୁ ରହିଗଲେଣି । ଜମିଚାଷ କରି ବେଶ୍ ଧାନ ଚାଉଳ ପାଆନ୍ତି । ଏବେ ନଡ଼ିଆ ବଗିଚା କରିଗଲେଣି । ପଶୁପତି ମାଇତି ସେଇ ରାମନଗରରେ ବାହା ହୋଇ ତା' ମା'କୁ ଧରି ଏଇଠି ଘର କଲା । ରଘୁ, ତାଙ୍କର ଗୋଟିଏ ପୁଅ, ଝିଅ ମୋନାକୁ ସେଇ ରାମନଗରରେ ବାହା ଦେଇଛନ୍ତି ।

ପଶୁପତି, ଏଇ ପାଞ୍ଚବର୍ଷ ତଳେ ସମୁଦ୍ରକୁ ଡଙ୍ଗା ନେଇ ଯାଇଥିଲା, ଅନ୍ୟମାନଙ୍କ ସାଙ୍ଗରେ ବାଗ୍‌ଦା ଚିଙ୍ଗୁଡ଼ି ଧରିବା ପାଇଁ । କ'ଣ ହେଲା କେଜାଣି ସେଇ ଡଙ୍ଗା ଉପରେ ତା'ର ପ୍ରାଣବାୟୁ ଉଡ଼ିଗଲା । ସାଙ୍ଗସାଥିମାନେ ତା'ର ମଲାଦେହକୁ ଧରି ଗାଁକୁ ଫେରିଲେ । ଏବେ ତ ବାଗ୍‌ଦା ଚିଙ୍ଗୁଡ଼ି ସୁନାଠାରୁ ଅଧିକ ଦାମ୍ । କେଜିଏ ଚିଙ୍ଗୁଡ଼ି ହେଲେ ଦିନକର ଖର୍ଚ୍ଚ ଚଳିଯାଏ । ମୁହାଣରୁ ଚିଙ୍ଗୁଡ଼ି ଯାଆଁଳ, ଚିଙ୍ଗୁଡ଼ିଧରି ସେମାନେ ପାରାଦ୍ୱୀପରେ ଚିଙ୍ଗୁଡ଼ି କମ୍ପାନୀକୁ ବିକ୍ରିକରିଥାନ୍ତି । ଏଇ କମ୍ପାନୀମାନେ ଆଗତୁରା ମାଛ ବଇନା ଦିଅନ୍ତି । ବାଗ୍‌ଦା ଚିଙ୍ଗୁଡ଼ି ଦାମ୍ ବଢ଼ିଲା ଦିନଠାରୁ ସେମାନଙ୍କର ଆର୍ଥିକ ଅବସ୍ଥା ବଦଳି ଯାଇଛି । ଯେଉଁମାନେ ଗାଁରେ ଝାଟିମାଟିରେ ଘର କରି ରହୁଥିଲେ, ଏବେ ସେମାନେ ଇଟାରେ କାନ୍ଥ କଲେଣି । ଜଣେ ଅଧେ ଚାଳ ପରିବର୍ତ୍ତେ ଟିଣ ଘର କଲେଣି, କିନ୍ତୁ ଚିଙ୍ଗୁଡ଼ିରୁ ଯେତେ ପଇସା ପାଉଛନ୍ତି ତା'ର ଅଧା ପଇସା ମଦପାଣିରେ ଉଡ଼ି ଯାଉଛି । ପଶୁପତି, ମାଛ ଧରେ, ସନ୍ଧ୍ୟାବେଳକୁ ମଦ ନ ପିଇଲେ ପେଲି ହୁଏ । ବର୍ଷକ ପରେ ସ୍ତ୍ରୀ ବି ତା'ର ବାଟ ଧରି ଚାଲିଯାଇଥିଲା । ଘରେ ରହିଗଲେ ରଘୁ ଓ ମୋନା । ରଘୁ ବୟସ ଚବିଶ କି ପଚିଶ । ବେଶ୍ ଗୋଲ୍ ଗୋଲ୍ ବାହୁ । ଡଙ୍ଗା ବାହିବାରେ କିମ୍ବା ଜାଲ ଟାଣିବାରେ ତାକୁ କେହି ପାରନ୍ତି ନାହିଁ । ରଘୁ ଚିକ୍କଣ କଳା ମୁଗୁନୀ ପଥର ପରି ସୁନ୍ଦର ମୂର୍ତ୍ତୀ ଦେଖିଲେ ଗାଁଟା ଯାକର ଯବାନ ଝିଅ ତା'ରି ଆଡେ ଚାହିଁଥାନ୍ତି । କିନ୍ତୁ ରଘୁର ସେ ଆଡ଼କୁ ନଜର ନ ଥାଏ । ସକାଳୁ ଉଠିଲେ ଏଇ ନଇକୂଳରେ ବନ୍ଧା ହୋଇଥିବା ଡଙ୍ଗାରେ ବସେ, ଜାଲବୁଣେ । ସକାଳୁଆ ଲାଲ ଟକ୍‌ଟକ୍ ସୂର୍ଯ୍ୟ କିରଣ ସମୁଦ୍ର ମୁହାଣ ଉପରୁ ନଇ ଭିତରକୁ ଆସିଲା ବେଳକୁ ରଘୁଆ ଡଙ୍ଗା ଧରି ବାହାରିଯାଏ । ତା'ର ମଦ ପାଣିରେ ଆଶା ନ ଥାଏ କି ଅଳସୁଆମିରେ ଶେଜ ଉପରେ ପଡ଼ି ରହେନି ।

ଭଉଣୀ ମୋନାକୁ ରାମନଗରରେ ବାହା ଦେଲାପରେ ରଘୁଆ ମନେମନେ ନିଶ୍ଚିତ ହୋଇଥିଲା। ଘରେ କେହି ନ ଥିଲା ବେଳେ ଯବାନ ଭଉଣୀକୁ ଏକା ଏକା ଛାଡ଼ି ଦେଇ ସେ ସମୁଦ୍ରରେ ମାଛ ଧରିଲା ବେଳେ ତା'ର ମନଟା ଘରଆଡ଼େ ବୁଲି ଆସେ। ଏ ଯୁଗ ଯାହା ହେଲାଣି, ଘଡ଼ିକେ ଘୋଡ଼ା ଛୁଟୁଛି । ମଦ ପାଣିରେ ଗାଁ ଟୋକାଏ ମସଗୁଲ। ସେତିକି ନୁହେଁ ଚିଙ୍ଗୁଡ଼ିବାଲାଙ୍କ ଦଲାଲମାନେ ଗାଁ ଗାଁରେ ଡେରା ପକାଉଛନ୍ତି। ପଇସାର ଅଭାବ ନାହିଁ। ପଇସା ସାଙ୍ଗକୁ ମଦପାଣି, ମଦପାଣି ସାଙ୍ଗକୁ ଅନ୍ୟକିଛି, ରଘୁଆ କାନରେ କଥା ପହଞ୍ଚେ। ଅମୁକ ଝିଅ ଚିଙ୍ଗୁଡ଼ି ଠିକାଦାର ଡେରାରେ ରାତିଟେ ରହି ଫେରିଲା। ଠିକାଦାରମାନେ ମଧ୍ୟ ଚିଙ୍ଗୁଡ଼ି ମୁଣ୍ଡ ଛଡ଼ାଇବା ନାଁରେ ସେଠି ଝିଅମାନଙ୍କୁ କାମରେ ଲଗାଇ ଦିଅନ୍ତି। ସମସ୍ତେ ସମାନ ନ ହେଲେ ମଧ୍ୟ କେତେକ ଠିକାଦାର ଯୁବତୀ ଝିଅମାନଙ୍କୁ ପାଖକୁ ଟାଣି ନେବାପାଇଁ ପଇସା ଖର୍ଚ୍ଚ କରନ୍ତି। ବାପା ମା ମଲାପରେ ରଘୁଆ ମନକୁ ସବୁବେଳେ ପାପ ଛୁଏଁ। ମୋନା ଘରେ ଏକା। ସାହିରେ କେତେ ପ୍ରକାର ଝିଅ ଅଛନ୍ତି, କାହା ମନକୁ କିଏ ଜାଣେ। ମୋନା ମନ ଯେ ବାଉଳା ନ ହେବ, ସେ କଥା କିଏ କହିବ ? ଏବେ ତା'ର ବାହାଘର ସାରି ଦେଲା ଦିନଠାରୁ ରଘୁଆ ଏକ ପ୍ରକାର ନିଶ୍ଚିନ୍ତ।

ମୋନାକୁ ବାହା ଦେଇସାରିଲା ପରେ ଦିନେ ରଘୁଆ ଯାଇଥିଲା ମୋନାକୁ ଦେଖା କରିବାକୁ। ମୋନାକୁ ଦେଖି ତା' ଘରୁ ଫେରିଲା ବେଳେ ଦେଖିଲା ଶାନ୍ତାକୁ। ଶାନ୍ତା ମୋନାର ସାହି ପଡ଼ିଶା ନଣନ୍ଦ। ବେଶ୍ ଗୋଲଗାଲ କୋଡ଼ିଏ ଏକୋଇଶ ବର୍ଷର ଝିଅ। ପ୍ରଥମ ଦେଖାରେ ରଘୁଆ ଦେହରେ ପ୍ରେମର ତାତି ବଢ଼ିଲା। ମୋନା ଘରୁ ଫେରିଲା ପରେ ଘରେ ଯେତେବେଳେ ଏକା ଏକା ବସେ, ମନଟା ସବୁବେଳେ ଶାନ୍ତା ପାଖକୁ ଚାଲିଯାଏ। କାମ ନ ଥିଲେ ବି ରଘୁଆ ମୋନାକୁ ଦେଖିବା ବାହାନାରେ ରାମନଗରକୁ ଯାଏ। କଥା ପ୍ରସଙ୍ଗରେ ମୋନା ଆଗରେ ଶାନ୍ତା କଥା କୁହେ। ଭଉଣୀ ବୁଝିଲା ଭାଇର ମନ ଘର ଧରିଲାଣି। ଶାନ୍ତା ଘର ସଙ୍ଗେ କଥାବାର୍ତ୍ତା କରି ବାହାଘର ଠିକ୍ ହେଲା।

ଶାନ୍ତା ରଘୁଆ ଘରକୁ ଆସିଥିଲା ବର୍ଷକ ତଳେ। କାଠଗଡ଼ି ନଈବନ୍ଧ ତଳେ ତାଙ୍କ ଘର ସାମ୍ନା ବନ୍ଧ ଉପରେ କ'ଣିଗଛ ଡାଳରେ ବଗବଗୁଲୀ ଦୁଇଟି

ବସା ବାନ୍ଧିଥାନ୍ତି। ଘର ପିଣ୍ଡାରୁ ଶାନ୍ତା ଦେଖେ, ବଗୁଲାବଗୁଲୀ ଆଡ଼େ ଚାହେଁ। ମଝିରେ ମଝିରେ ରଘୁଆକୁ କହେ ଦେଖ ଦେଖ ବଗ-ବଗୁଲୀକୁ। ରଘୁଆ ସେଇଆଡ଼େ ଚାହେଁ- ହସେ। ଶାନ୍ତାକୁ ଧରି ଘର ଭିତରକୁ ପଶେ। ବେଶ୍ ଆନନ୍ଦରେ ଦିନ କଟିଯାଏ। କ'ଣ ବା ଦରକାର ତାଙ୍କ ଜୀବନ ଧାରଣ ପାଇଁ। ସକାଳୁ ଉଠିଲେ ଡଙ୍ଗା ଜାଲଧରି ନଇ, ସମୁଦ୍ର ପାଣି ସଙ୍ଗେ ଖେଳ-ତା'ରି ଭିତରୁ ସେ ଉପାର୍ଜନ କରେ ଦିନ ପାଇଁ କିଛି ପଇସା। ସେଇଥିରୁ କିଣେ ଡାଲି, ଚାଉଳ, କିରୋସିନ୍, ଶାନ୍ତା ଆଉ ତା' ପାଇଁ ଲୁଗାପଟା। ଘରକରଣା ଜିନିଷ ଭିତରେ କେତେଖଣ୍ଡ ରସଥାଳୀ, ରୋଷେଇ କରିବା ପାଇଁ ଡେକ୍‌ଚି ଆଉ ଦିଖଣ୍ଡ ଦସ୍ତା ଟ୍ରଙ୍କ୍। ଚିଙ୍ଗୁଡ଼ି ଦଲାଲ୍ ଡେରା ଘରେ ଟି.ଭି. ଲାଗିଲାଣି। କେତେଥର ଶାନ୍ତା ଯାଇଛି ସେଠି ଟି.ଭି. ଦେଖିବାକୁ। ଗାଁରେ ବିଜୁଳି ବତୀ ତ ନାହିଁ। ଠିକାଦାର ଗାଡ଼ି ବେଟେରୀ ଲଗେଇ ଟି.ଭି. ଦେଖୁଛି। ସେମାନେ କେଉଁଠୁ ସେ ସବୁ ପାଇବେ। ତଥାପି, ଶାନ୍ତା ମନ ନେବାକୁ ଯାଇ ରଘୁଆ କହେ ବୁଝିଲୁ, କୁସୁପୁର ସରପଞ୍ଚ ଆସିଥିଲା, ସେ କହୁଥିଲା ଆମ ଅଞ୍ଚଳର ମନ୍ତ୍ରୀ କୁଆଡ଼େ କହିଛି ଆମ ଗାଁକୁ ବିଜୁଳୀ ଆଲୁଅ ଆସିବ, ବିଜୁଳୀ ଆଲୁଅ ଆସିଲେ, ଦେଖିବୁ ତୋ ପାଇଁ ଗୋଟେ ଟି.ଭି. କିଣିଦେବି। ସେଇ ଡେରା ଘରକୁ ଆଉ ଯିବୁନି କି ଠିକାଦାରର ଆଖିଠାରକୁ ଦେଖିବୁନି। ରଘୁଆ କଥା ଶୁଣି ଶାନ୍ତା କହିଲା ଖାଲି କ'ଣ ଆଖିମାରେ, ଛାଡ଼ ଛାଡ଼ ମଦ ପିଇ ସେ ଯେଉଁ କାମ କରେ ନ କହିବା, ନ ଦେଖିବା ଭଲ। ଆମରି ଆଖି ଆଗରେ ଡେରା ମଣ୍ଡଳ ଝିଅ ଛାତି ଉପରେ ସେଦିନ ଯେମିତି ହାତ ପକାଇଦେଲା, ମୁଁ ହୋଇଥିଲେ ତା' ମୁହଁରେ ଚଟ୍‌କଣି କସି ଦେଇଥାନ୍ତି। ହେଲେ ସେ ଛୋପରୀ ଟୋକି ତା' ହାତକୁ ଠେଲିଦେଇ ହସି ହସି ସେଇଠି ଠିଆ ହୋଇ ଟି.ଭି. ଦେଖିଲା। ରଘୁଆ କହିଲା ଆମ ଗରୀବ ଲୋକଙ୍କ ଭାଗ୍ୟରେ ସେଇଆ ବୋଧେ ଲେଖା ହୋଇଛି। ଟଙ୍କା ଲୋଭ ଦେଖାଇ, ଠିକାଦାରମାନେ କ'ଣ ନ କରୁଛନ୍ତି। ଟଙ୍କା ଆଗରେ ସମସ୍ତଙ୍କ ମୁହଁ ବଙ୍କା ହୋଇଯାଏ। ଡେରା ମଣ୍ଡଳ ଝିଅ ହସି ହସି ତା' ହାତକୁ ଠେଲିଦେଲା ଆଉ କିଏ ଲୁଚି ଲୁଚି ତା'ରି ଡେରା ଘର ଭିତରକୁ ଅଧରାତିରେ ପଶିଲା। ଏସବୁ ତ ସବୁଦିନିଆ ଘଟଣା। ଗାଁଟା ଯାକର ଭେଣ୍ଡିଆମାନେ ସକାଳ ହେଲେ,

ପଶିଲେ ସମୁଦ୍ରରେ, ଫେରିଲେ ସନ୍ଧ୍ୟା ବେଳକୁ ତ କେଉଁଦିନ ରାତି ଅଧକୁ। ଅଇଲା ବେଳକୁ ସମସ୍ତେ ମଦ ନିଶାରେ ଟୁଲୁଟୁଲୁ। ସେମାନଙ୍କ ଯବାନ୍ ମାଇପମାନେ ଠିକାଦାରର ଡେରା ଘରେ ପଶିବେନିତ ଆଉ କୁଆଡ଼େ ଯିବେ। ରଘୁଆ କଥାଶୁଣି ଶାନ୍ତା ପ୍ରତିବାଦ କରି କହିଲା ତା' ହେଲେ ତୁ କ'ଣ କହୁଛୁ। ମୁଁ ଯାଉଛି ଟି.ଭି. ଦେଖିବାକୁ ସେଇଥିପାଇଁ। ରଘୁଆ ତା' ପାଟିରେ ହାତ ରଖି କହିଲା ଆରେ ସମସ୍ତେ କ'ଣ ସମାନ। ମୁଁ କ'ଣ ପରିଶ୍ରମ କରୁନି ମୁଁ ତ କେବେ ମଦପାଣିର ଆଶ୍ରା ନେଇନି। ତା' ହେଲେ ତୁ କାହିଁକି ଠିକାଦାର ଆଡ଼େ ଚାହିଁବୁ। କଥାବାର୍ତ୍ତା ଭିତରେ ତାଙ୍କର ସେଇ ଛୋଟ ଘରଟିରେ ସେମାନେ ଶୋଯାଆନ୍ତି। ସେଦିନ ଥିଲା ଶୁକ୍ରବାର, ତା' ଆଗଦିନ ଠିକାଦାର ଡେରା ଟି.ଭି.ରୁ ସମସ୍ତେ ଶୁଣିଲେ ଶୁକ୍ରବାର ଦିନ ବର୍ଷା ବାତ୍ୟା ହେବ। ମତ୍ସ୍ୟଜୀବୀମାନଙ୍କୁ ସମୁଦ୍ର ଭିତରକୁ ଯିବାକୁ ମନା କରାହେଉଥାଏ। ରଘୁଆ ଶାନ୍ତା ଆଡ଼େ ଚାହିଁ କହିଲା 'ଆଲୋ ଆଜିତ କେହି ମାଛ ଧରି ଯିବେନି। ପାଗଟା ମେଘୁଆ ଧରି ନେଲାଣି। ସକାଳୁ ସକାଳୁ ସମୁଦ୍ର ଆଡୁ ପବନ ବୋହିବା ଆରମ୍ଭ ହେଲାଣି'। ଏତିକି କହି ରଘୁଆ ନଈବନ୍ଧ ଉପରକୁ ଉଠିଲା। ଗାଁର ଅନ୍ୟ କେତେଜଣ ମଧ ନଈ ବନ୍ଧକୁ ଉଠି ସାରିଥାନ୍ତି। କେତେଜଣ ନଈ କୂଳରେ ବନ୍ଧା ହୋଇଥିବା ଡଙ୍ଗାଗୁଡ଼ିକୁ ଆହୁରି ଭଲ ଭାବରେ କୂଳରେ ପୋତା ହୋଇଥିବା ଖୁଣ୍ଟରେ ବାନ୍ଧୁଥାନ୍ତି। ବତାସ ପବନରେ ଯେମିତି ଡଙ୍ଗା ପିଟି ହୋଇ ଭାଙ୍ଗି ନ ଯାଏ। ରଘୁଆ ନଈ ତଳକୁ ଆସିଲା, ଡଙ୍ଗାକୁ ଆଗ ଖୁଣ୍ଟରେ ଭଲ ଭାବେ ବାନ୍ଧିସାରି ଉଠିଲା ବନ୍ଧ ଉପରକୁ। ସେତେବେଳକୁ ପବନ ଜୋରରେ ବହିବା ଅରମ୍ଭ କରି ଦେଲାଣି। ପବନ ସାଙ୍ଗକୁ ବର୍ଷା ଅସରାକୁ ଅସରା, ରଘୁଆ ଘରକୁ ଫେରିଲା। ଘର ଭିତରେ ଶାନ୍ତା ଲୁଗାପଟା ଦିଖଣ୍ଡ ଭଙ୍ଗାଭଙ୍ଗି କରି ରଖୁଥାଏ।

ଦିନ ଦଶଟା ବେଳକୁ ପବନର ପ୍ରକୋପ ବଢ଼ିବାକୁ ଲାଗିଲା। ବନ୍ଧ ଉପରେ ଠିଆ ହୋଇ ରଘୁଆ ଦେଖିଲା ବନ୍ଧ ଉପର ଉଚ୍ଚା ଜାଗାରେ ଟିଙ୍ଗୁଡ଼ି ଠିକାଦାରର ଡେରା ଘରର ଟିଣ ପବନରେ ଉଡ଼ି ଧଡ଼ର ଧଡ଼୍ ହୋଇ ବନ୍ଧ ତଳେ ପଡ଼ିଲା। ଡେରା ଘରେ ବସିଥିବା କେତେଜଣ ଗାଁ ଛୁଆ ଡିଆଁମାରି ଘରୁ ବାହାରି ଆସି ବନ୍ଧ ଉପରେ ଠିଆହେଲେ। ଆଗରେ ସମୁଦ୍ର, ସେଇପଟୁ ପବନ

ଜୋରରେ ବହୁଥାଏ। କାଠଗଡ଼ି ନଈ ଫୁଲି ଉଠୁଥାଏ। ବନ୍ଧ ଉପରେ ଠିଆ ହୋଇ ରଘୁଆ ଦେଖିଲା ତା' ଡଙ୍ଗା ଖଣ୍ଡକ ନଈ ପାଣିର ଢେଉରେ ପଡୁଥାଏ ଉଠୁଥାଏ।। ପବନର ଗତି ବଢ଼ିବାରେ ଲାଗିଲା। କାଠଗଡ଼ି ନଈପାଣି ଚାହୁଁ ଚାହୁଁ ବନ୍ଧ ଅଧାକୁ ଲାଗିଲା। ସମୁଦ୍ର ଆଡୁ ପାଣି ପବନର ସୁ ସୁ ଶବ୍ଦରେ ଗାଁ ଲୋକ ଭୟଭୀତ ହୋଇ ପଡ଼ିଲେ। ଦେଖୁ ଦେଖୁ ଘରର ଛପର ମାନ ଉଡ଼ିବାରେ ଲାଗିଲା। ରଘୁଆ ଘରର ଛପର ପବନର ବେଗରେ ଉପରେ ଉଡ଼ିଲା। ଘର ଛାତ ଉଡ଼ିବା ଦେଖି ଶାନ୍ତା ଘର ଭିତରୁ ବାହାରି ପଡ଼ି ବନ୍ଧ ଉପରେ ରଘୁଆକୁ ଡାକ ପକାଇଲା "ଆରେ, ଘର ଉଡ଼ି ଯାଉଛି ଜଲଦି ଆ"। ଶାନ୍ତା ପାଟି ଶୁଣି ରଘୁଆ ତା' ଘର ଆଡ଼କୁ ଦଉଡ଼ିଲା। ବନ୍ଧ ଉପରୁ ତଳକୁ ଖସିଲା ବେଳକୁ ଦେଖିଲା ବନ୍ଧ ଉପରେ କ'ଣିଗଛ ଡାଳରେ ଯେଉଁଠି ବଗବଗୁଲି ବସା ବାନ୍ଧିଥିଲେ ସେ ଡାଳଟି ଭାଙ୍ଗି ପଡ଼ି ନଈ ସୁଅରେ ଭାସି ଯାଉଛି। ବଗ ଦୁଇଟା କଁ କଁ ଶବ୍ଦ କରି ନଈ ଉପରେ ଉଡ଼ିଲାବେଳେ ସେମାନଙ୍କୁ ପବନର ବେଗ ତଡ଼ି ନେଉଥାଏ। ବନ୍ଧ ତଳୁ ରଘୁଆ ପାଟିକରି କହିଲା "ଶାନ୍ତା ସେ ଡାଳଟା ଭାଙ୍ଗି ପଡ଼ିଲା", ଶାନ୍ତା ପାଟିକରି କହିଲା ଆମ ଚାଳ ସବୁ ଉଡ଼ିଯାଉଛି, ଦଉଡ଼ି ଆ।

ଘର ଭିତରକୁ ପଶୁ ପଶୁ ରଘୁଆ ଦେଖିଲା ତାଙ୍କ ବାଡ଼ିପଟ ନଡ଼ିଆ ଗଛଟି ଉପୁଡ଼ି ପଡ଼ି ତାଙ୍କ ପଛ ପଟ ଘର ଉପରେ ଶୋଇପଡ଼ିଲା। ଧନୁ ମଣ୍ଡଳ ଘର ଚାକୁଣ୍ଡା ଗଛ ଭାଙ୍ଗିପଡ଼ି ତା' ଘରରୁ ଫାଳେ ଭାଙ୍ଗିଦେଲାଣି। ଧନୁ ମଣ୍ଡଳ ମାଇପ ଗାଈ, ଛେଳିଗୁଡ଼ାକୁ ଗୁହାଳରୁ ଫିଟେଇ ଦେଇ, ବନ୍ଧ ଉପରକୁ ଆଣୁଥାଏ। ରଘୁଆ ପଛଘରେ କୁକୁଡ଼ା କେତେଟାଙ୍କୁ କୁକୁଡ଼ା ଘରୁ ଖୋଲି ନେଇ ଶାନ୍ତାକୁ କହିଲା ବନ୍ଧ ଉପରକୁ ଉଠିଯିବାକୁ, ବର୍ଷାରେ ଘର ଭିତରେ ସବୁ ଜିନିଷ ଓଦା ହୋଇଗଲାଣି। ଏଣେ ତୋଫାନରେ ଗଛଗୁଡ଼ିକ ଭାଙ୍ଗି ପଡୁଥାନ୍ତି। ଗାଁଟା ଯାକ ଲୋକ ଛୁଆ ପିଲାଙ୍କୁ ଧରି ବନ୍ଧ ଉପରକୁ ଉଠୁଥାନ୍ତି। ବୁଢ଼ାବୁଢ଼ୀମାନେ ଭଗବାନ ରକ୍ଷାକର ରକ୍ଷାକର ବୋଲି ପାଟି କରୁଥାନ୍ତି। ଚାରିଆଡ଼େ କୋଳାହଳ, ସମୁଦ୍ର ମାଡ଼ି ଆସୁଚି। କାଠଗଡ଼ା ନଈ ପାଣି ବନ୍ଧ ଉପରକୁ ଆସିଗଲାଣି। ସମସ୍ତଙ୍କ ଘର ଭିତରେ ପାଣି। ଶାନ୍ତା ବହୁ କଷ୍ଟରେ ଘର ଭିତରୁ ଟେକି ଆଣିଥିଲା ତାଙ୍କର ଦସ୍ତା ଟ୍ରଙ୍କ ଖଣ୍ଡକ। ତା'ରି ଭିତରେ ତାଙ୍କର ସମସ୍ତ ସମ୍ପତ୍ତି। ଚାହୁଁ

ଚାହୁଁ ବନ୍ଧ ଉପରକୁ ପାଣି ଉଠିଲା- ପବନ ଜୋରରେ ବହିଲା, ରହିବା ମଧ୍ୟ ସମ୍ଭବ ହେଲାନି, ଗାଁଟି ଯାକର ପିଲାଛୁଆ, ବୁଢ଼ାବୁଢ଼ୀ, ଛେଳିମେଣ୍ଢା, କୁକୁଡ଼ା, ଗାଈଗୋରୁ ସମସ୍ତେ ସେଇବନ୍ଧ ଉପରେ। ବନ୍ଧ ଖଣ୍ଡକୁ ଆଶ୍ରା।

ହଠାତ୍ ବାତ୍ୟା କମିଗଲା। ଲୋକମାନେ ଆଶ୍ୱସ୍ତ ହେଲେ, ଭଗବାନ କୃପାକଲେ। ଆଣ୍ଠୁଏ ପାଣିରେ ବନ୍ଧ ଉପରେ ଠିଆହୋଇ ରଘୁଆ ଚାହୁଁଥିଲା ନଈ ଭିତରେ ତା'ର ଡଙ୍ଗା ଆଡ଼କୁ, ସେତେବେଳକୁ ଡଙ୍ଗା ନ ଥାଏ। କେତେବେଳୁ ନଈର ସୁଅ ତାକୁ କେଉଁ ଯାଗାରେ ବୁଡ଼ାଇ ମାଡ଼ି ଦେଇଥାଏ। ଖାଲି ତା'ର ନୁହେଁ ପ୍ରାୟ ଗାଁଟା ଯାକର କାହାର ଡଙ୍ଗା ଦିଶୁ ନ ଥାଏ। ବର୍ଷା ପବନ କମିଲେ ଦେଖିବା, ଏଇ ଆଶା ନେଇ ରଘୁଆ ଶାନ୍ତା ଆଡ଼କୁ ଚାହିଁଲା। ବନ୍ଧ ଉପରେ ଆଣ୍ଠୁଏ ପାଣିରେ ମୁଣ୍ଡ ଉପରେ ଦସ୍ତା ଟ୍ରଙ୍କଖଣ୍ଡିକୁ ଧରି ଶାନ୍ତା ଠିଆ ହୋଇଥାଏ। ଘର ଭିତରେ ପୁରୁଷେ ପାଣି। ନଈବନ୍ଧ ଉପରେ ଠିଆ ହୋଇ ସମସ୍ତେ ଦେଖୁଥାନ୍ତି ପବନ କମିବା ପରେ ଉତ୍ତର ଦିଗରୁ ସମୁଦ୍ର ଜୁଆର ପ୍ରବଳ ବେଗରେ ମାଡ଼ି ଆସୁଛି। କିଛି ଜଣା ପଡୁ ନ ଥାଏ। ସମୁଦ୍ରଟା ମାଡ଼ି ଆସୁଛି ନାଁ ଖଣ୍ଡେ ଧଳା ମେଘ ମାଡ଼ି ଆସୁଛି। ମୁହୂର୍ତ୍ତକ ମଧ୍ୟରେ ସମୁଦ୍ରଟା ମାଡ଼ି ଆସିଲା। ଖାଲି ଢେଉ, କେତେ ଉଚ୍ଚରେ କଳନା କରିବା ଶକ୍ତି ତାଙ୍କର ନ ଥିଲା। ଚାହୁଁ ଚାହୁଁ ବନ୍ଧ ଉପରେ ଠିଆ ହୋଇଥିବା ଗୋରୁ, ଗାଈ, ଛେଳି, ମେଣ୍ଢା ଲୋକମାନଙ୍କୁ ଭସାଇ ନେଲା। ପ୍ରବଳ ଢେଉ ସଙ୍ଗେ ସାମୁଦ୍ରିକ ଝଡ଼ ତୋଫାନ। ସମସ୍ତେ ପ୍ରଳୟଙ୍କରୀ ସମୁଦ୍ର ଢେଉରେ ଭାସିବାକୁ ଲାଗିଲା।

ଶାନ୍ତା କହୁଥିଲା, ସେଇ ପ୍ରଳୟଙ୍କରୀ ସାମୁଦ୍ରିକ ଝଡ଼ ଭିତରେ ସେ ବନ୍ଧ ଉପରୁ ଭାସି ଯାଉଥିଲା ବେଳେ ରଘୁଆ ତା' ପାଖକୁ ପହଁରି ପହଁରି ଆସୁଥିଲା। ତା'ର ମନେପଡୁଛି ରଘୁଆ ତାକୁ ଭିଡ଼ି ଭିଡ଼ି ନେଇ ଭାସି ଆସୁଥିବା ଚାଳ ଖଣ୍ଡକ ପାଖରେ ଛାଡ଼ି ଦେଇଥିଲା। ଖଣ୍ଡେ ବାଉଁଶକୁ ଆଶ୍ରାକରି ସେ ଉଠି ଯାଇଥିଲା, ଭାସି ଯାଉଥିବା ଚାଳ ଉପରକୁ। ପ୍ରବଳ ବାତ୍ୟା ଆଉ ସମୁଦ୍ର ପାଣିର ସୁଅ ମୁହଁରେ ରଘୁଆ ଚେଷ୍ଟା କରୁଥିଲା ଶାନ୍ତା ଆଶ୍ରା ନେଇଥିବା ଚାଳ ପାଖକୁ ଚାଲି ଆସିବାକୁ। ଚାଳ ଉପରେ ଆଶ୍ରା ନେଲା ପରେ, ରଘୁଆକୁ ଚାହିଁ ଶାନ୍ତା ପାଟି କରୁଥିଲା। "ପଳେଇଆ- ପଳେଇଆରେ।" ପାଣିର ସୁଅ ମୁହଁରେ

ପଡ଼ି ରଘୁଆ ଆଉ ଆସି ପାରିଲାନି। ସମୁଦ୍ରର ଜୁଆରରେ ସେ ଭାସିଗଲା। ଭାସିଯାଉଥିବା ଭଙ୍ଗା ଚାଳର ବାଉଁଶକୁ ଧରି ସେ ଦେଖିଥିଲା, ସମୁଦ୍ର ଢେଉରେ ଉବୁଟୁବୁ ହେଉଥିବା ରଘୁଆର ହାତଟିକୁ। ଯେ, ସବୁଦିନ ସମୁଦ୍ର ଭିତରେ ଢେଉକାଟି ବୁଲୁଥିଲା, ସେଦିନ ସେ ସୁଅ ମୁହଁରେ ପଡ଼ି ଖଣ୍ଡେ ବାଉଁଶକୁ ଧରିପାରିଲାନି। ତା'ରି ଆଗରେ ଗାଁଟି ଯାକର ଲୋକ, ଜୀବଜନ୍ତୁ ଯେଉଁମାନେ ବନ୍ଧ ଉପରେ ଠିଆ ହୋଇଥିଲେ, ସମସ୍ତେ ଭାସିଗଲେ, ଭଙ୍ଗା ବାଉଁଶ ଖଣ୍ଡିକୁ ଆଶ୍ରା କରି ସେ ଭାସି ଭାସି ଲାଗିଥିଲା, ତା' ଗାଁଠାରୁ ଚାରି ମାଇଲ ଦୂର ଆଉ ଗୋଟେ ଗାଁ ପାଖ ବନ୍ଧ ମୁଣ୍ଡରେ। ତିନିଦିନ ପରେ ତାକୁ ଉଦ୍ଧାର କରିଥିଲେ ସେଇ ଗାଁର ଲୋକମାନେ। ରାସ୍ତା କଡ଼ରେ ପଡ଼ିଥିଲା ଶାନ୍ତା। ବାତ୍ୟା ପୀଡ଼ିତ ଅଞ୍ଚଳକୁ ରିଲିଫ୍ ନେଇ ସେଇ ବାଟରେ ଗଲାବେଳେ ଯେ ମୁଠେ ଚୁଡ଼ା କି ଚାଉଳ ଦେଲା, ଶାନ୍ତା ସେମାନଙ୍କୁ କହୁଥାଏ ମୋ ରଘୁଆ ପାଇଁ ମୁଠେ ଦିଅ। ସେ ସମୁଦ୍ରକୁ ଯାଇଛି ଆସୁଥିବ, ରଘୁଆ ନ ଖାଇଲେ ମୁଁ କ'ଣ ଏକା ଖାଇପାରିବି। ଅଧା ଛିଣ୍ଡା ଲୁଗା ଖଣ୍ଡିକ ଦେହରେ ଲାଖି ଯାଇଥାଏ। ଲଙ୍ଗଳା ଦେହ ପ୍ରତି ତା'ର ନଜର ନ ଥାଏ।

ଶାନ୍ତା ଆଖିରେ ଲୁହ ନାହିଁ, ଦେହରେ ଲୁଗା ନାହିଁ, ହାତରେ ବଳ ନାହିଁ, ସେ ଖାଲି ଚାହୁଁଥିଲା ଆକାଶକୁ, ଯେମିତି ଖୋଜୁଛି କାହାକୁ। ମଝିରେ ମଝିରେ କାଦୁଅ ମୁଠେ ମୁଣ୍ଡରେ ମାରି ଉପରକୁ ଚାହିଁ ମନକୁ ମନ ଗପି ଯାଉଛି। ଖଣ୍ଡେ ଭଙ୍ଗା ବାଉଁଶକୁ ଏବେବି ଚାପି ଧରିଛି ତା'ରି ଛାତି ଉପରେ। ମଝିରେ ମଝିରେ ପ୍ରଳାପ କରି କହୁଥାଏ "ପଳେଇଆରେ- ପଳେଇ ଆ।"

—୦୦୦—

# ବିରୁମାଷ୍ଟ୍ରେ

ମହାପ୍ରଳୟଙ୍କରୀ ବାତ୍ୟାର ଚାରିଦିନ ପରେ ଦିଗିତାରୀ ଗାଁର ପୂର୍ବତଟ ଜପାନଇ ବନ୍ଧ କଡ଼ରେ, କେତୋଟି ପଚିଆସୁଥିବା ମଣିଷ ଶବକୁ ଏକାଠି କରି ଆନନ୍ଦମାର୍ଗୀ ସେବାଦଳ, କିରୋସିନି ପକାଇ ପୋଡ଼ିଦେବା ବେଳେ ଖଣ୍ଡେ ଦୂରରେ ଠିଆ ହୋଇ, ସେଇ ଗାଁର, ବାର ବର୍ଷର ପିଲା ଦାମ ଏକାଲୟରେ ଚାହୁଁଥିଲା ସେଇ ଶବଗୁଡ଼ିକ ଆଡ଼େ। ଆନନ୍ଦମାର୍ଗୀ ଦଳ, ବନ୍ଧ ତଳେ ଅଣ୍ଟା ପାଣି ଆଉ ଅଧାପଚା ଧାନ ଗଛ ଭିତରେ ଲାଗି ରହିଥିବା ଦୁଇଟି ଶବର ଗୋଡ଼ ଧରି ଟାଣି ଟାଣି ଆଣୁଥାନ୍ତି। ଦାମ ଠିଆ ହୋଇଥିବା ଯାଗାରୁ ଆଉ ଅଣ୍ଟାବାଟ ଆଗକୁ ଯାଇ ଚାହୁଁଥିଲା ସେଇ ଶବ ଦୁଇଟି ଆଡ଼େ। ଧାନ ବିଲ ପାଣି ଭିତରୁ ବନ୍ଧକଡ଼କୁ ଘୋଷାରି ଘୋଷାରି ଅଣାଯାଉଥିବା, ଶବଦୁଇଟିକୁ ଦେଖି, ଦାମ ଚିହ୍ନିବାକୁ ଚେଷ୍ଟା କରୁଥିଲା। ଶବ ଦୁଇଟି ଫୁଲି ଯାଇଥାନ୍ତି। ପଛପଟ ନାଲି ପଡ଼ି ଯାଇଥାଏ। ଦେହରେ କିଛି ନ ଥାଏ। ଖାଲି ମଣିଷର ଆକୃତିରୁ ମଣିଷ ଶବ ବୋଲି ଜାଣିବା କଥା। ବନ୍ଧ ଉପରୁ ଦାମ ଦେଖୁଥିଲା... ଆଉ ମନେ ମନେ କହୁଥିଲା ଏଇ ବୋଧେ "ବିରୁ ମାଷ୍ଟ୍ରଙ୍କ ଶବ" ତା'ର ମନେପଡ଼ିଲା ଗତ ପାଞ୍ଚ ବର୍ଷ ହେଲା ବିରୁ ମାଷ୍ଟ୍ରେ ବେକରେ ତୁଳସୀମାଳି ପକାଇଥିଲେ। ସେ ପିଲାଦିନୁ ଦେଖୁଛି। ସେ ଚାହୁଁଥିଲା ଟାଣି ଟାଣି ଆଣୁଥିବା ଶବ ବେକରେ ମାଳି ଅଛି କି ନାହିଁ। ହଠାତ୍ ସେ ପାଟିକରି ଉଠିଲା "ଏଇ ତ ବିରୁ ମାଷ୍ଟ୍ରେ"। ତାଙ୍କ ବେକରେ ସେଇ ତୁଳସୀ ମାଳି। ବନ୍ଧ ଉପରେ ଠିଆ ହୋଇ ଆନନ୍ଦମାର୍ଗୀ ସେବାଦଳଙ୍କୁ କ'ଣ କହିବାକୁ ଯାଉଥିଲା, ମାତ୍ର ତା' କଥା କେହି ଶୁଣୁ ନ ଥିଲେ।

ବନ୍ଧ ତଳେ ଦଳେ କୁକୁର ଦିଇଟା ମଲା ଗାଇଙ୍କ ଶବକୁ ଖଣ୍ଡିଆ କରି ପୁଳା ପୁଳା ପଚା ମାଂସ ଟାଣିବାରେ ଲାଗିଥାନ୍ତି। ମଝିରେ ମଝିରେ ମାଂସ ପୁଳାଏ ନେବା ପାଇଁ, ତାଙ୍କ ମଧ୍ୟରେ ଝଗଡ଼ା...। ଶାଗୁଣା କିମ୍ବା କୁଆ ଦେଖାଯାଉ ନ ଥାନ୍ତି କିନ୍ତୁ ପ୍ରବଳ ବାତ୍ୟାରୁ ଗାଁ କୁକୁରମାନେ ବଞ୍ଚିଯାଇଥିଲେ। ତାଙ୍କ ଭାଗରେ ପଡ଼ିଛି, ବନ୍ଧ ତଳେ ଶହ ଶହ ଗୋରୁ ଗାଇଙ୍କ ଶବ। ପ୍ରାୟ ପାଞ୍ଚ-

ଛଟା ମଣିଷ ଶବକୁ ଏକାଠି କରି ବନ୍ଧତଳେ ଭାଙ୍ଗି ପଡ଼ିଥିବା ଗଛର ଓଦା ପାଳ ଉପରେ କିରୋସିନି ଢାଳି ସେବାଦଳ ନିଆଁ ଲଗାଇଲେ। ଚାରିଆଡ଼େ ପୋଡ଼ା ମାଂସର ଗନ୍ଧ ଭାସି ଉଠିଲା। ବିରୁ ମାଷ୍ଟ୍ରଙ୍କ ଦେହଟା ଜଳି ଉଠିଲା। ସେତେବେଳ ପର୍ଯ୍ୟନ୍ତ ଦାମ ଆଖିରେ ଲୁହ ନ ଥିଲା। ନିଆଁ ସଙ୍ଗେ, କଳାଧୂଆଁର କୁଣ୍ଡଳୀ ଉପରକୁ ଉଠିଲା ବେଳେ, ଦାମ ଆଖିରୁ ଲୁହ ଧାରେ ଗଡ଼ିଲା। ଦି ଜଣ ଆନନ୍ଦମାର୍ଗୀ ବନ୍ଧ ଉପରକୁ ଉଠିଲେ। ଜଣେ ହେଲେ ଗାଁ ଲୋକ ବନ୍ଧ ଉପରେ ଦିଶୁ ନ ଥାନ୍ତି। ଖାଲି ଏକା ଦାମ ଠିଆ ହୋଇଥାଏ। ତାକୁ ସେମାନେ ହିନ୍ଦିରେ କ'ଣ ପଚାରିଲେ ସେ ବୁଝୁ ନ ଥାଏ ଖାଲି ବଲ ବଲ କରି ଚାହୁଁଥାଏ ସେଇ ପୋଡ଼ି ଯାଉଥିବା ଶବ ଆଡ଼େ।

ସେବାଦଳ, ମଣିଷ ଶବଗୁଡ଼ାକୁ ସେମିତି ଅଧା ପୋଡ଼ା ଅବସ୍ଥାରେ ଛାଡ଼ି ନଦୀ ବନ୍ଧ ଉପରକୁ ଉଠିଲେ। ଆଗରୁ ନାଲି ପଡ଼ିଯାଇଥିବା ମଣିଷ ଶବଗୁଡ଼ାକର ଅଧାପୋଡ଼ା ହାତ ଗୋଡ଼ ପୋଡ଼ା କାଠ ଖଣ୍ଡପରି ଦିଶୁଥାଏ। ସେବାଦଳ ଲୋକମାନେ ହାତରେ ପାଞ୍ଚ ହାତିଆ ଠେଙ୍ଗା, ଦେହରେ ଗେରୁଆ ଲୁଗା, ମୁହଁ ଉପରେ ଖଣ୍ଡେ ଧଳା ପଟି ବାନ୍ଧି, ପୁଣି ବନ୍ଧ ତଳକୁ ଖସିଲେ। କୁକୁର ଖାଉଥିବା ଗୋରୁ ଗାଈଙ୍କ ଶବଗୁଡ଼ାକୁ ଘୋଷାରି ଘୋଷାରି ଗୋଟିଏ ସ୍ଥାନରେ ଜମାକଲେ, ଛୋଟ ବଡ଼ ହୋଇ ପ୍ରାୟ ଆଠ ଦଶଟା ଜମା ହେଲା ପରେ କିରୋସିନ ଢାଳି ନିଆଁ ଲଗାଇଲେ। ଗତ ଦୁଇଦିନ ଧରି ଏଇ ଆନନ୍ଦମାର୍ଗୀ ସେବାଦଳର ଲୋକମାନେ, ଦିଗିତାରୀ ଗାଁ ପାଖଆଖରେ ଜପା ନଈକୂଳ, ପାଖ ଧାନ ବିଲରେ ମରି ପଡିଥିବା ପଶୁ ଆଉ ମଣିଷ ମାନଙ୍କର ଶବକୁ କିରୋସିନି ପକାଇ ପୋଡୁଥାନ୍ତି। ଗାଁରେ ଶୁଖିଲା କାଠ ମିଳିବ କୁଆଡୁ? ସବୁ ଗଛ ଭାଙ୍ଗି ପଡ଼ିଛି। ଏବେ ବି ଆଣ୍ଠୁଏ ଅଣ୍ଟାଏ ପାଣି। ସେମାନେ ସାଙ୍ଗରେ ମୋଟର ଟାୟାର ବି ଆଣିଥିଲେ। କେତେ ଜାଗାରେ ମୋଟର ଟାୟାର ଲଗାଇ ଶବ ପୋଡ଼ିଲେ। କେତେ ଶବ ପୋଡ଼େ କେତେ ଅଧା ପୋଡ଼ାରେ ରହିଯାଏ। ଅଧା ପୋଡ଼ା ଶବ ଉପରେ କିଛି ବ୍ଲିଚିଂ ପାଉଡ଼ର ପକାଇ ଦେଇ ସେମାନେ ଯାଆନ୍ତି ଅନ୍ୟ ଶବ ସନ୍ଧାନରେ।

ବନ୍ଧ ଉପରେ ଠିଆ ହୋଇ ଦାମ, ସେପଟକୁ ଚାହିଁଲା। ମଲା ପଶୁମାନଙ୍କୁ ମଧ୍ୟ ସେହିପରି ନିର୍ବିକାର ଚିତ୍ତରେ, ସେମାନେ ପୋଡୁଥାନ୍ତି। ସତେ ଯେପରି,

ଏଇ ଦଳ ମଢ଼ ପୋଡ଼ିବା କାମକୁ ନିଜର ପେଷା କରି ନେଇଛନ୍ତି। ପଶୁ ଶବଗୁଡ଼ିକ ଯେମିତି କଳାପଡ଼ି ଆସିଲା, ଅଧା ପୋଡ଼ାରେ ଛାଡ଼ି ଦେଇ କିଛି ବ୍ଲିଚିଂ ପାଉଡ଼ର ପକାଇ ସେବାଦଳର ଲୋକମାନେ ବନ୍ଧ ଉପରକୁ ଉଠି, ଆଗକୁ ଚାଲିଲେ। ଜପା ନଇ ଭିତରେ ଦିଟା ଭୁଟ୍‌ଭୁଟି ସେମାନଙ୍କୁ ତାଙ୍କ ଗାଁ ପାଖେ ଛାଡ଼ିଦେଇ ଯାଇଥିଲା ଦିନ ଏଗାରଟା ବେଳେ। ଚାରିଟା ବେଳକୁ ଆସିବ, ଘାଟପାଖକୁ ତାଙ୍କୁ ନେବାପାଇଁ। ଦାମ ସେମାନଙ୍କ ଯିବା ବାଟକୁ ଚାହିଁଥିଲା। ସେମାନେ ନଇ ବନ୍ଧରେ କିଛି ବାଟ ଗଲା ପରେ ଘାଟ ପାଖେ ତଳକୁ ଓହ୍ଲାଇଲେ। ସେମାନଙ୍କ ଉପରୁ ଆଖି ଫେରାଇ ଦାମ ଚାହିଁଲା- ବିରୁ ମାଷ୍ଟ୍ରଙ୍କ ଦରପୋଡ଼ା ଶବ ଆଡ଼େ। ବୋଧେ ତାଙ୍କର ଦିଟା ହାତ ପୋଡ଼ି ନ ଥାଏ। ଅଧା କଳା ପଡ଼ିଯାଇଥିବା ହାତରେ ଆଙ୍ଗୁଠି କେତେଟା ନଡ଼ ନଡ଼ ହେଉଥାଏ।

ଦାମ ଆଖି ଆଗରେ, ପ୍ରଳୟଙ୍କରୀ ବାତ୍ୟା ଦିନର ଘଟଣାମାନ ନାଚି ଉଠୁଥିଲା। ସେ କେତେ ପାଟି କରି ଡାକୁଥିଲା ମାଷ୍ଟ୍ରେ ଦଉଡ଼ି ଧରି ପକ୍କା ଉପରକୁ ଉଠିଆସ। ପକ୍କା ଉପରେ ଠିଆ ହୋଇ, ସେ ଖଣ୍ଡେ ଲମ୍ବା ଦଉଡ଼ି ପାଣିକୁ ପକାଇ ଥିଲା। ମାଷ୍ଟ୍ରେ ଦଉଡ଼ି ଉପରେ ହାତ ପକାଇଲା ବେଳେ, ତାଙ୍କ ପଚାଶ ବର୍ଷର ସ୍ତ୍ରୀ, ତାଙ୍କ ହାତରୁ ପାଣି ଢେଉରେ ଖସିଗଲେ। ସେମାନେ ଆଉ ଫେରିଲେନି ଦିଗିତାରୀ। ଆଖପାଖ କୋଡ଼ିଏ ପଚିଶ ଗାଁର ଲୋକମାନେ ବିରୁମାଷ୍ଟ୍ରଙ୍କୁ ଚିହ୍ନନ୍ତି। କେବଳ ଆଜିକା ପିଲା ନୁହଁନ୍ତି, କୋଡ଼ିଏ, ପଚିଶବର୍ଷ ଧରି ଯେଉଁ ପିଲାମାନେ ଏଇ ଆଖପାଖ ବିଦ୍ୟାଳୟରୁ ପାଶ କରିଯାଇଛନ୍ତି ସେମାନେ ସମସ୍ତେ ବିରୁମାଷ୍ଟ୍ରଙ୍କୁ ଜାଣନ୍ତି। ଦେହରେ ଖଣ୍ଡେ ଧଳା ଖଦି ଚଦର, ଅଣ୍ଟା ତଳକୁ ସଫାଖଦି ଲୁଗା ସବୁବେଳେ ତାଙ୍କ ଦେହରେ ଥାଏ। ବେକରେ କେଉଁ କାଳରୁ ଗୋଟେ ତୁଳସୀମାଳି ପକାଇଥାନ୍ତି।

ନଦୀ ଘାଟ ପାଖରୁ ଆନନ୍ଦମାର୍ଗୀ ସେବାଦଳ, ଭୁଟୁଭୁଟିରେ ବସିଲେ। ଦାମ ନଦୀ ବନ୍ଧ ଉପରୁ ଗାଁ ଆଡ଼େ ଫେରିଲା। ଫେରିଲା ବାଟରେ ତା'ର ମନେପଡୁଥିଲା, ଏଇ ବିରୁମାଷ୍ଟ୍ରେ ଗାଁରେ କିଏ ଜଣେ ମଲେ, ଆଗଯାଇ ଠିଆ ହେଉଥିଲେ, ଗାଁ ବାଲାଙ୍କୁ ଡାକି ଏକାଠି କରୁଥିଲେ-ଦିନରେ ମରିଥିବା ଲୋକ ଯେପରି ତରା ଉଇଁଲା ପୂର୍ବରୁ ଦାହ ହୁଏ, ସେମିତି ରାତିରେ ମରିଥିବା ଲୋକ,

ସୂର୍ଯ୍ୟ ଉଠିଲା ବେଳକୁ ଦାହ ହୋଇଥାଏ। ଗାଁରେ ବିରୁମାଷ୍ଟ୍ରେ ଥିବା ପର୍ଯ୍ୟନ୍ତ, କେବେ ହେଲେ କାହାର ଶବ ବାସି ମଡ଼ା ହୋଇନି। ଦାମର ମନେ ପଡୁଥିଲା ପାଞ୍ଚବର୍ଷ ତଳର କଥା। ତା'ର ବାପ କୁଜଙ୍ଗ ବଜାରରୁ ଘରକୁ ଫେରିଲା ବାଟରେ ମଟର ଧକ୍କାରେ ଅଚେତ ହୋଇ ଡାକ୍ତରଖାନା ଗଲା। ସେମାନେ ଖବର ପାଉ ପାଉ ରାତି ଅଧ। କ'ଣ କରିବେ। ଘରେ ଏକା ବାପ, ମୂଲ ଲାଗିଲେ କୁଟୁମ୍ବ ପୋଷେ। ଅଧ ରାତିରେ ଗାଁରେ ବା କାହାକୁ ଡାକିବେ। ତା' ମା କିଛି ବାଟ ନ ପାଇ, ଏଇ ବିରୁମାଷ୍ଟ୍ରଙ୍କ ଘରକୁ ଦଉଡ଼ିଲା। ବିପଦ, ଆପଦରେ ସମସ୍ତେ ବିରୁମାଷ୍ଟ୍ରଙ୍କ ସାହାଯ୍ୟ ମାଗିଥାନ୍ତି। କୁଆଡୁ ବୁଲିବୁଲି ଆସି ମାଷ୍ଟ୍ରେ କହିଲେ "ଆରେ ଶାମାଟା ଡାକ୍ତରଖାନାରେ ପଡ଼ିଛି ମୋତେ କହିନ। ଚାଲ ଚାଲ, ଦେଖିବା"। ଅନ୍ଧାର ରାତିରେ ଖଣ୍ଡେ ଲଣ୍ଠନ ଧରି ତାଙ୍କରି ସଙ୍ଗେ ଦାମ ଯାଇଥିଲା କୁଜଙ୍ଗ ଡାକ୍ତରଖାନାକୁ। ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ଦେଖିଲା ତା' ବାପା ଶାମା ଡାକ୍ତରଖାନା ପିଣ୍ଡା ଉପରେ ଖଣ୍ଡେ ଧଳା ଚଦର ଘୋଡ଼ି ହୋଇ ଶୋଇଛି। ସେ ଭାବିଥିଲା ଶୋଇଛି, ମାତ୍ର ପରେ ବୁଝିଲା ତା' ବାପା ମରିଯାଇଛି। ରାତି ପାହିବା ଯାଏ, ବିରୁମାଷ୍ଟ୍ରେ ସେଇଠି ସେଇ ଡାକ୍ତରଖାନା ପିଣ୍ଡାରେ ବସିଲେ। ସକାଳୁ ସକାଳୁ ଡାକ୍ତରବାବୁଙ୍କ ହାତଗୋଡ଼ ଧରି ମଲା ଶାମାକୁ ଗାଁକୁ ନେବାକୁ କହିଲେ। ମାତ୍ର ପୁଲିସ ନ ଆସିଲେ ଲାସ୍ ଛଡ଼ା ହେବନି। ମାଷ୍ଟ୍ରେ ଦଉଡ଼ିଲେ ଡାକ୍ତରଖାନାରୁ ଥାନାକୁ। ଦାମ ସେମିତି ବାପର ଲାସ୍ ପାଖରେ ଜଗି ବସିଥାଏ। ଘଣ୍ଟାକ ପରେ ଜଣେ ବାବୁ ଆସିଲେ। ପରେ ଶୁଣିଲା ବିରୁ ମାଷ୍ଟ୍ରେ ବହୁତ କୁହାବୋଲା କଲାପରେ ସେ ଆସିଥିଲେ। କ'ଣ କିମିତି କରି ପୁଲିସଙ୍କୁ ଆଣିଲେ ସେ ଜାଣନ୍ତି। ଗାଁରେ କୁହାକୁହି ହେଲେ ମଲା ଲୋକଙ୍କଠାରୁ ମଧ୍ୟ ପୋଲିସ୍‌ବାଲା ଟିକସ ଆଦାୟ କରନ୍ତି। ଟିକସ ନ ଦେଲେ ପୋଷ୍ଟମର୍ଟମ୍ ପାଇଁ ଶବକୁ ପଠାଇବେନି କି, ମଲା ଦେହ ଉପରୁ ଚଦର କଢ଼ା ଯିବନି। ଡାକ୍ତରଖାନାରୁ ତା' ବାପର ଲାସ୍‌କୁ ଧରି ବିରୁମାଷ୍ଟ୍ରେ ଗାଁରେ ପହଞ୍ଚିଲା ବେଳକୁ ଦିନ ଦ୍ୱିପ୍ରହର। ଗାଁ ବାଲାଙ୍କୁ ଡାକି, ଶବ ଶତ୍କାର କଲାବେଳକୁ ସନ୍ଧ୍ୟା। ସେଦିନ ବିରୁମାଷ୍ଟ୍ରେ କହୁଥିଲେ, "ଆରେ-ଶାମା ମରିଗଲା ବୋଲି, ଆମେ ଗାଁ ବାଲାଏ ଥାଉ ଥାଏ ତା' ମଡ଼ା କ'ଣ ତା' ଘରେ ପଡ଼ି ରହିବ। ବାସୀ ମଡ଼ା

ହେବ ? ପାଞ୍ଚ ଜଣ ବାହାରିଲେ, ମୁଁ ତା' ଶବକୁ ପୋଡ଼ି ଦେବି। ଗାଁରୁ କେତେ ବାହାରିଲେ, କେତେ ବାହାରିଲେନି। ମାଷ୍ଟ୍ରେ ପାଞ୍ଚ ଛଅ ଜଣଙ୍କୁ ଧରି ଏଇ ନଈବନ୍ଧ ପାଖ ଆମ୍ବ ତୋଟାରେ ତା' ବାପକୁ ସେଦିନ ପୋଡ଼ି ଥିଲେ। ସେ ଆମ୍ବତୋଟା ଆଜି ନାହିଁ। ଯେତେସବୁ ଆମ୍ବଗଛ ଥିଲା, ପ୍ରଳୟଙ୍କରୀ ବାତ୍ୟାରେ ତଳେ ଶୋଇଯାଇଛି। ତୋଟାଆଡୁ ମୁହଁ ଫେରାଇ ଦାମ ଚାହିଁଲା ପୁଣି ସେହି ବିରୁମାଷ୍ଟ୍ରଙ୍କ ଦରପୋଡ଼ା ଶବ ଆଡ଼େ। ମନେ ମନେ ଭାବୁଥିଲା ଯେଉଁଲୋକ ଶବ ଦାହ ଶେଷ ନ ହେବା ପର୍ଯ୍ୟନ୍ତ ମଶାଣି ଭୂଇଁରେ ଜଗି କରି ବସିଥାଏ ତା'ରି ମଲା ଦେହକୁ ଆଜି ଗାଁ ବାଲା ନୁହେଁ କେଉଁ ରାଇଜର ସେବକ ଦଳ ପୋଡ଼ିଲେ। ସେ ପୋଡ଼ା ପୁଣି ଅଧା ପୋଡ଼ା। କଳା ପଡ଼ିଯାଇଥିବା ଅଧାପୋଡ଼ା ଶବ ଉପରେ ପୁଣି ଧଳା ବ୍ଲିଚିଂ ପାଉଡ଼ର। ଦାମ, ମାଷ୍ଟ୍ରଙ୍କ ଶବଆଡ଼େ ଚାହିଁ ପାରିଲା ନାହିଁ। ଆଖିରୁ ତା'ର ଦି ଧାର ଲୁହ ବୋହି ଆସିଲା। ତା' ଆଖି ଆଗରେ ସେ ଦିନର ମହା ପ୍ରଳୟଙ୍କରୀ ବାତ୍ୟା ଆଉ କାଠଗଡ଼ି ନଈର ପାଣି ଭାସି ଉଠିଲା।

ଶୁକ୍ରବାର ଦିନ (ଅକ୍ଟୋବର ମାସ ୨୯ ତା'ରିଖ) ଝଡ଼-ବାତ୍ୟା ହେବ ବୋଲି ରେଡ଼ିଓ ତୁହାକୁ ତୁହା କହୁଥାଏ। ଏ ଅଞ୍ଚଳରେ ବଢ଼ି, ବାତ୍ୟା ସବୁ ଦିନର ସାଥୀ। ତେଣୁ ରେଡ଼ିଓରେ ଦିଆଯାଉଥିବା ସତର୍କବାଣୀକୁ ସମସ୍ତେ ଶୁଣୁଥାନ୍ତି, କହୁଥାନ୍ତି ମାତ୍ର କେହି ଘରଛାଡ଼ି ନିରାପଦ ସ୍ଥାନକୁ ଯିବାକୁ ବାହାରୁ ନ ଥାନ୍ତି। ସମସ୍ତେ ଜାଣନ୍ତି, ବାତ୍ୟା ହେବ, ବର୍ଷା ହେବ- ବେଶୀ ହେଲେ କାଠଗଡ଼ି ନଈର ପାଣିଟା ଫୁଲିଉଠି ବନ୍ଧ କୂଳକୁ ଲାଗିଯିବ। କିଏ ଜାଣିଥିଲା ଏମିତି ଗୋଟେ ମହାପ୍ରଳୟଙ୍କରୀ ବାତ୍ୟା ହୋଇ ତାଙ୍କ ଗାଁରୁ ଅଧେ ଲୋକଙ୍କୁ ଭସାଇ ନେବ ? ସବୁ ଘରକୁ ଭାଙ୍ଗି ଚୁରମାର କରିଦେବ। ଶହେ ବର୍ଷର ଗଛସବୁଙ୍କୁ ଧରାଶାୟୀ କରିଦେବ ବୋଲି। ସେଦିନ ସକାଳ କଥା ଦାମ ଆଖି ଆଗରେ ନାଚି ଉଠିଲା। ଶୁକ୍ରବାର ଦିନ ସକାଳୁ ସକାଳୁ ପବନ ବୋହିବା ଆରମ୍ଭ ହେଲା। ତା' ସାଙ୍ଗକୁ ବର୍ଷା ଆଉ ଉତ୍ତରା ପବନ ଲାଗି ରହିଲା। ପବନରେ ଗାଁର ପ୍ରାୟ ସମସ୍ତଙ୍କ ନଡ଼ିଆ ଗଛ ନଇଁ ପଡ଼ିବାରେ ଲାଗିଲା। ଚାଳଘରର ଛପର ଉଡ଼ିଗଲା। ଆସ୍ତେ ଆସ୍ତେ ପବନର ଗତି ସାଙ୍ଗକୁ ବର୍ଷା

ଆଉ କାଠଗଡ଼ି ନଈର ପାଣି ଫୁଲି ବନ୍ଧ ପାଖକୁ ଲାଗିଲା । ବାତ୍ୟାର ପ୍ରକୋପରେ ଗାଁ ଲୋକ ଡରିଗଲେ । ଆଗ ବିରୁମାଷ୍ଟ୍ରେ ପାଟି କରି କହିଲେ "ଆରେ ପଳେଇ ଯାଅ, ଗାଁ ମୁଣ୍ଡ ହରିଦାସଙ୍କ ପକ୍କା ଘରେ ଆଶ୍ରୟ ନିଅ" । ତାଙ୍କ ପାଟି ଶୁଣି, କେତେ ଲୋକ ସ୍ତ୍ରୀ ପିଲାଙ୍କୁ ଧରି ହରିଦାସଙ୍କ ପକ୍କାଘର ଆଡ଼େ ଚାଲିଲେ । ହଠାତ୍ ଦିନ ଗୋଟାଏ ବେଳକୁ ପବନ କମିଗଲା । ଆଶ୍ରୟ ନେଇଥିବା ଲୋକେ ଦେଖିଲେ ଗଛ ବୃକ୍ଷ ଭାଙ୍ଗି ଯାଇଥିଲେ ମଧ ଘର ଚାଳ ଅଛି । କିଏ କିଏ ହରିଦାସଙ୍କ ଛାତ ଘରୁ ଓହ୍ଲାଇ ନିଜ ଘରଆଡ଼େ ବାହାରି ପଡ଼ିଲେ । କେତେ ବି ଘରଛାଡ଼ି ଆସି ନ ଥାନ୍ତି । କିନ୍ତୁ ହଠାତ୍ ବାତ୍ୟାଟା ଗାଁର ଦକ୍ଷିଣ ଦିଗରୁ ପୁଣି ମାଡ଼ି ଆସିଲା । ସମୁଦ୍ର ପାଣି ୧୫ଫୁଟ ଉଚ୍ଚରେ ଉଠିଆସିଲା । ତା' ସାଙ୍ଗରେ ପୁଣି ପ୍ରବଳ ପବନ ବୋହିବା ଆରମ୍ଭ ହେଲା । ବାତ୍ୟା ସାଙ୍ଗକୁ ବର୍ଷା । ସମୁଦ୍ରର ଲୁଣିପାଣି, କାଠଗଡ଼ା ନଈର ପାଣିକୁ ଠେଲି ଫୁଲିବାରେ ଲାଗିଲା । ଚାହୁଁ ଚାହୁଁ କାଠଗଡ଼ା ନଈବନ୍ଧ ଡେଇଁ ଗାଁ ଭିତରେ ପାଣି ପଶିଗଲା । ଲୋକମାନେ ପ୍ରାଣ ବିକଳରେ ଘରଛାଡ଼ି ଧାଇଁଲେ ହରିଦାସଙ୍କ ଘରଆଡ଼େ । ମାତ୍ର କେତେଟା ମୁହୂର୍ତ୍ତ ମଧ୍ୟରେ ହରିଦାସଙ୍କ ପକ୍କାଘରର ଛାତଟା ଗାଁ ଲୋକଙ୍କ ଦ୍ୱାରା ଭରପୁର ହୋଇଗଲା । ସମସ୍ତେ ଏକସ୍ୱରରେ ପାଟି କରୁଥାନ୍ତି ଭଗବାନ ରକ୍ଷା କର । ବାତ୍ୟାର ପ୍ରକୋପ ବଢୁଥାଏ । ଦାମ, ତା' ମା ଘରଛାଡ଼ି ହରିଦାସଙ୍କ ଛାତ ଉପରେ ଚଢ଼ିଗଲେ । ସେତେବେଳକୁ ତାଙ୍କ ପକ୍କାଘରେ ଆଣ୍ଠୁଏ ପାଣି ହେଲାଣି । ତାଙ୍କରି ଆଗରେ ପାଣି ବଢ଼ି ବଢ଼ି ଅଧାକାନ୍ଥ ଉପରକୁ ଉଠିଲା । ଏତିକି ବେଳକୁ ବିରୁମାଷ୍ଟ୍ରେ ତାଙ୍କ ସ୍ତ୍ରୀଙ୍କୁ ଧରି ହରିଦାସଙ୍କ ଘର ଆଡ଼କୁ ଆସୁଥାନ୍ତି । ବୁଢ଼ୀ ତାଙ୍କ ହାତ ଧରିଥାଏ । ମାଷ୍ଟ୍ରେ ତାକୁ ବେକେ ପାଣିରେ ଘୋଷାରି ଘୋଷାରି ଗାଁ ଭିତରୁ ଆଣୁଥାନ୍ତି । ଦାମ ଛାତ ଉପରୁ ଡାକ ପକାଇଲା । ମାଷ୍ଟ୍ରେ ଏଇପଟେ ଆସ, ସେପଟେ ପାଣି ମାଡ଼ରେ ନଈ ବନ୍ଧ ଭାଙ୍ଗି ଗଲାଣି । ବର୍ଷା ପବନରେ ମାଷ୍ଟ୍ରେ ତାଙ୍କ ସ୍ତ୍ରୀଙ୍କ ହାତ ଧରି ବହୁ କଷ୍ଟରେ ଛାତ ପାଖେ ପହଞ୍ଚିଲେ । ସେତେବେଳକୁ ଛାତର ତାଜା ପାଖରେ ପାଣି ଲାଗିଲାଣି । ଦାମ ମାଷ୍ଟ୍ରଙ୍କୁ ଦଉଡ଼ି ଧରି ତାଜା ଉପରକୁ ଉଠି ଆସିବାକୁ କହିଲେ- ମାତ୍ର ମାଷ୍ଟ୍ରେ ବୁଢ଼ୀ ହାତ ଛାଡ଼ି ପାରୁ ନ ଥାନ୍ତି । ଛାତ ଉପରୁ ଅନ୍ୟମାନେ ପାଟି କରୁଥାନ୍ତି, ମାଷ୍ଟ୍ରେ ଦଉଡ଼ି ଧରି

ତାଙ୍କୁ ଉପରକୁ ଉଠିଆସ। ପାଣି ସେତେବେଳକୁ ତାଙ୍କୁ ବୁଡ଼ାଇବାକୁ ବସିଲାଣି। ପବନ ମାଡ଼ରେ ମାଷ୍ଟ୍ରେ ଆକ୍ତାମାକ୍ତା ହେଲେଣି ତଥାପି ବୁଢ଼ୀ ହାତ ଛାଡୁ ନ ଥାନ୍ତି। ଛାତ ଉପରୁ ଦାମ ପାଟି କରୁଥିଲା। ମାଷ୍ଟ୍ରେ ଦଉଡ଼ି ଧରି ଉଠି ଆସନ୍ତୁ କିନ୍ତୁ ବିରୁମାଷ୍ଟ୍ରେ ତାଙ୍କ ସ୍ତ୍ରୀର ହାତ ଛାଡ଼ି ପାରିଲେନି। ପର ମୁହୂର୍ତ୍ତରେ ପ୍ରବଳ ପାଣି ଢେଉରେ ଆଗକୁ ଆଗକୁ ଭାସିଗଲେ। ଦାମ ଦେଖୁଥାଏ ସେ ଦୁହେଁ ପାଣିର ସୁଅରେ ଆମ୍ବ ତୋଟାଆଡ଼େ ଭାସି ଯାଉଥାନ୍ତି। ବିରୁମାଷ୍ଟ୍ରେ ତାଙ୍କ ସ୍ତ୍ରୀ ଦୁହେଁ ଯାକ ହାତ ଧରାଧରି ହୋଇ ଭାସିଗଲେ। ବେଦୀ ଉପରେ ବାହାଘର ବେଳେ ହାତଗଣ୍ଠି ପଡ଼ିଲାବେଳେ, ଗୋଟିଏ ହାତ ଆଉ ଗୋଟିଏ ହାତକୁ ଯେପରି ଛାଡ଼ି ପାରେନି, ଠିକ୍ ସେମିତି ମାଷ୍ଟ୍ରେ ବୁଢ଼ୀଙ୍କ ହାତ ଛାଡ଼ି ପାରିଲେନି। ପ୍ରଳୟଙ୍କରୀ ବାତ୍ୟାରେ ସେମାନେ ଭାସିଗଲେ। ଦାମ ପାଟି କରୁଥାଏ-ଅନ୍ୟମାନେ ମଧ୍ୟ ଡାକିଥିଲେ ମାତ୍ର ମାଷ୍ଟ୍ରେ ଶୁଣିଲେନି। ବୋଧେ ଏତେ ବର୍ଷକାଳ ବୁଢ଼ୀ ସାଙ୍ଗେ ସାଙ୍ଗ ହୋଇ ଶେଷ ମୁହୂର୍ତ୍ତରେ ତାଙ୍କ ହାତ ଛାଡ଼ି ଦେଇ ନିଜେ ବଞ୍ଚିବାକୁ ଚାହିଁଲେନି। ବାତ୍ୟା ଭୀଷଣ ଆକାର ଧାରଣ କଲା। ପାଣି ଛାତ ପାଖକୁ ଲାଗିଲା। ନଈ ବନ୍ଧ ବୁଡ଼ିଗଲା। ଛାତ ଉପରୁ ସେ ଦେଖୁଥାଏ ତା'ରି ଗାଁର କେତେ ଲୋକ ଭାସି ଯାଉଛନ୍ତି। ଗୋରୁ, ଗାଈ, ଛେଳି, ମେଣ୍ଢା ସେହି ପ୍ରଳୟଙ୍କରୀ ଜଳ ସ୍ରୋତରେ ଭାସିଗଲେ।

ଖୋଲା ଛାତ ଉପରେ ଗୋଟେ ଦିନ ଗୋଟେ ରାତି ଭୋକ ଉପାସରେ ଆଶ୍ରୟ ନେଲାପରେ ତଳକୁ ଓହ୍ଲାଇ ଦେଖିଲା ତାଙ୍କର ସେ ପୂର୍ବ ଗାଁ ଆଉ ନାହିଁ। ଘର ନାହିଁ କି ଗଛ ନାହିଁ। ଗାଁର ଶିରୀ ତୁଟି ଯାଇଛି। ଚାରିଆଡ଼େ ମଣିଷ, ପଶୁମାନଙ୍କର ଶବ।

ଦାମ ବନ୍ଧ ତଳୁ ପୁଣି ପଛକୁ ଚାହିଁଲା। ସନ୍ଧ୍ୟା ଆସିଗଲାଣି। କାଉ କୋଇଲି କାହାର ପାଟି ଶୁଭୁନି, ସତେ ଯେପରି ମୃତ୍ୟୁର ବିଭୀଷିକା ଚାରିଆଡ଼େ ଘେରି ଯାଇଛି।

—୦ଠ୦—

# କଥା ଏ ଯୁଗର

କଥା ଅଛି ତିନି ତୁଣ୍ଡରେ ଛେଳି, କୁକୁର। ସତ ହେଉ କି ମିଛ ହେଉ ପାଞ୍ଚଜଣ ଯଦି ଗୋଟିଏ କଥାକୁ ଦୋହରାଇ କହିଲେ ମିଛଟା ବି ସତ ହୋଇଯାଏ। ଏବେ କଥାଟାକୁ ସମସ୍ତେ ସତ ମଣିଲେଣି। ମାତ୍ର ବଟିଆ ବୋଉ ପାଞ୍ଚଜଣଙ୍କ ଦେଖାଶିଖା କଥା ଉପରେ କାନ ଦିଅନ୍ତିନି। କ'ଣ ମିଳିବ ସେ ନେଫେଡ଼ା କଥାରୁ। ତାଙ୍କକଥାରେ ଗାଁ ଲୋକମାନେ ସଜ ଗୋବରରେ ପୋକ ପକାଇ ଦେବେ। କିଏ କାହାର ଶିରୀ ଦେଖି ପାରନ୍ତିନି। ତାଙ୍କ ପୁଅ ବଟକୃଷ୍ଣ ଏବେ ଭୁବନେଶ୍ୱରରେ ବି.ଏ. ପଢୁଛି। ଆଜି ପର୍ଯ୍ୟନ୍ତ କେହି ହେଲେ ଏ ଗାଁରୁ କଲେଜ ମାଟି ମାଡ଼ି ନ ଥିଲେ। କିନ୍ତୁ ବଟିଆ ବୋଉଙ୍କର ଥିଲା ଏକଜିଦ୍ ପୁଅ, କଲେଜରେ ପଢ଼ିବ। ଯୁଗ ଯାଇ କୁଆଡ଼େ ଗଲାଣି। ମାଟ୍ରିକ୍ ଗୋଟେ ପାଠ ନା ଅସରପା ଗୋଟେ ଚଢ଼େଇ। ତାଙ୍କରି ଜିଦ୍‌ରୁ, ବଟ ଯାଇ ଭୁବନେଶ୍ୱରରେ ପଢୁଛି। ଏକଥା ଗାଁ ଲୋକଙ୍କ ଦେହରେ ଯାଉନି, ବଟିଆ ବୋଉ ମୁହଁ ଉପରେ, ସମସ୍ତେ ବଟିଆର ପ୍ରଶଂସା କଲାବେଳେ, ପଛରେ କେତେ କଥା କହନ୍ତି। କଥା ଯେ ବଟିଆ ବୋଉଙ୍କ କାନକୁ ନ ଆସେ ଏକଥା ନୁହେଁ, କିନ୍ତୁ ସେ ପଛ କୁହା କଥାଗୁଡ଼ାକୁ କାନକୁ ନିଅନ୍ତିନି। ସେ ଜାଣନ୍ତି, ତାଙ୍କ ପୁଅ କଲେଜ ପଢୁଛି ବୋଲି ତାଙ୍କ ସାହିର ମାଇପେ ପାଞ୍ଚଟା ଦେଖି ସହି ପାରନ୍ତିନି। କିନ୍ତୁ ଯେଉଁଦିନ ଗାଁ ଦାଣ୍ଡରେ ବୈକୁଣ୍ଠ ତ୍ରିପାଠୀ ଭୁବନେଶ୍ୱରରୁ ଅଇଲା ବେଳେ କେଡ଼େ ବଡ଼ ପାଟି କରି କହିଲେ ବୁଝିଲ ବଟ ବୋଉ, ତୁମେ ସିନା ଏଣେ ବାରମାସରେ ତେର ଓଷା ବ୍ରତ କରୁଛ, ଛୁଆଁଛୁଇଁ ଧରି ବସିଛ, ତେଣେ ତୁମ ଇଷାନ କୋଣରେ ଯିଏ ପାଣି ଦେବ ତାଙ୍କ ହାତରୁ ତୁମ ପୂର୍ବ ପୁରୁଷ ପାଣି ପିଇବେଟି ? ହସି ହସି ଦାଣ୍ଡ ଦୁଆରେ ଏଡ଼େବଡ଼ ପାଟିରେ ବୈକୁଣ୍ଠ ତିଆଡ଼ି କଥାଟା କହିଦେଇ ଗଲାପରେ, ଦାଣ୍ଡ ଦୁଆର କବାଟ ଫାଙ୍କରେ ବୈକୁଣ୍ଠ ତିଆଡ଼ିଙ୍କ କଥାକୁ କାନ ଦେଇ ଶୁଣୁଥିବା ସାଇ ମାଇପେ କେତେ ଜଣ, ଶୁଣେଇ ଶୁଣେଇ

କହିଲେ ହଁ ମ, ବିରାଡ଼ି ଆଖି ବୁଜି ଦୁଧ ପିଉଛି, ସେ ଭାବୁଛି ତାକୁ କେହି ଦେଖି ପାରୁ ନାହାନ୍ତି- କଥା ଯାଇ ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ାଇଲାଣି। ଏଣେ ମା କହୁଛି ମୋ ପୁଅ ଗୋଟେ ସୁନା ମୁଣ୍ଡା, ଲାଜ ନାହିଁ ଯେ ସେ ବଟିଆ ବୋଉ ମୁହଁକୁ। ମାଇପ ପାଞ୍ଚଟାଙ୍କ ଆକ୍ଷେପ ଶୁଣି ନ ଶୁଣିଲା ପରି ସେହି ବାଟ ଦେଇ ପଣ୍ଡା ସାହି ଆଡ଼କୁ ଗଲାବେଳେ, ପଣ୍ଡାସାହିର ଡମି ବୁଢ଼ୀ ତାଙ୍କ ଉଚ୍ଚ ପିଣ୍ଡାରେ ବସି ପାକୁଆ ପାଟି ମେଲା କରି କହିଲେ "ହଇଲୋ, ଅଣ୍ଡିରାଚଣ୍ଡି ମାଇପେ ଆଜି କାଲି କଳିଯୁଗରେ ଜାତି ଧର୍ମ କ'ଣ ଅଛି ଯେ ଏତେ ବାଛବିଚାର ପଡ଼ିଛି। ଘୋର କଳିକାଳ ଏ ପୃଥିବୀକୁ ମାଡ଼ି ବସିଲାଣି। କିଏ କହିଥିଲାଟି ନିଆଁଲଗା ମନରେ କ'ଣ ପଡୁଛି...

"ସର୍ବେ ହୋଇବେ ଏକାକାର,
ନଥିବ ବେଦର ବିଚାର"

ଆଲୋ ଖଣ୍ଡେଇତ କ'ଣ, କରଣ କ'ଣ, ବାଉରୀ ପାଣଘରେ ବ୍ରାହ୍ମଣ, ବନ୍ଧୁ ବାନ୍ଧିବେ। ଘନ ଦାସର ଟୋକି ମାଇପ, ଦାଣ୍ଡ କବାଟକୁ ଫାଳେ ଆଉଯାଇ, ଡମି ବୁଢ଼ୀର ଢଗଢମାଳି ଶୁଣୁଥିଲା। କବାଟ କୋଣରୁ ଫାଳେ ମୁହଁ ବାହାର କରି କହିଲା "ଆଈ ସବୁ ଦିନ ସନ୍ଧ୍ୟା ବୁଡୁ ବୁଡୁ ପୋଲାଙ୍ଗ ତେଲ ଦୀପଟା ଧରି ଭାଗବତ ଘରେ ବସୁଛ। ପୋଥି ପୁରାଣ ଶୁଣୁଛ, ଏପଦକ କିଏ କହିଥିଲା ମନେରଖି ପାରିନ, ଯାଅ ଯାଅ ସେଇ ପଣ୍ଡା ସାହିର ଧ୍ରୁବ ବୁଢ଼ାକୁ ପଚାରିବ, ସେଇ ତୁମ କାନରେ କହିଦେବ"। ଧ୍ରୁବ ବୁଢ଼ା ନାଁ ଶୁଣିଲେ, ଡମି ବୁଢ଼ୀ ଦେହରେ ନିଆଁ ଲାଗିଯାଏ। ସେ କେତେ ଯୁଗର ପୁରୁଣା କଥା। ଡମି ସେତେବେଳେ ପାଖ ଗାଁରୁ ବାହାହୋଇ ଏଇ ଗାଁକୁ ଆସିଥାଏ। ବାହାଘରର ଛ' ମାସ ପରେ ଗେରସ୍ତ ଗଲେ ବିଦେଶ। ବର୍ଷକୁ ଥରେ ଅଧେ ଆସିଲେ ଯଥେଷ୍ଟ। କେଉଁଠି ଯାଇ କଲିକତା, ସେଇଠି କେଉଁ ଓଡ଼ିଆ ହୋଟେଲରେ ରୋଷେଇଆ ଚାକିରି। ଆସିବାକୁ ଚାରିଦିନ ପୁଣି ପଇସା ଖର୍ଚ୍ଚ। ଡମି ତାଙ୍କର ଯୁଆନ ବେଳଟା ଶାଶୁ, ଶ୍ୱଶୁର, ଯା, ନଣନ୍ଦମାନଙ୍କ ସାଙ୍ଗରେ କାଟି ଦେଇଛି। ବାହା ଘରର ଆଠ ବର୍ଷପରେ, ସେ ଯାଇଥିଲା ତ୍ରିବେଣୀ ଯାତକୁ। ଷାଠିଏ ଖଣ୍ଡ ମୌଜାରେ ଏଇ ତ୍ରିବେଣୀ ଯାତ ପ୍ରସିଦ୍ଧ। ମାଘ ମାସ ଅମାବାସ୍ୟା ଦିନ, ପ୍ରାଚୀ

ନଦୀର ତ୍ରିବେଣୀ ଘାଟରେ ବୁଡ଼ ପଡ଼େ। ପାଖ ଆଖ ଗାଁ ଗଣ୍ଡାରୁ ହଜାର ହଜାର ଲୋକ ସୂର୍ଯ୍ୟୋଦୟ ଶୁଭ ମୁହୂର୍ତ୍ତରେ ବୁଡ଼ ପକାଇ, ପ୍ରାଚୀ କୂଳର ଦ୍ୱାଦଶ ଶିବ ଲିଙ୍ଗ ମଧ୍ୟରୁ ତୃତୀୟ ଲିଙ୍ଗ ବେଲେଶ୍ୱରଙ୍କ ଦର୍ଶନ କରନ୍ତି। ସାତ ଦିନ ଧରି ତ୍ରିବେଣୀ ଯାତ୍ରା ସେଇ ପ୍ରାଚୀକୂଳ ବିରାଟ ଆମ୍ବ ତୋଟାରେ ଚାଲେ। କାହିଁ କୁଆଡୁ ଦୋକାନୀମାନେ ଆସିଥାନ୍ତି। ଗାଁ ଲୋକମାନେ, ଏଇ ଯାତ୍ରାରୁ ବାହାରେ ବ୍ରତଘର ପାଇଁ ଜିନିଷ କିଣନ୍ତି। ଘର କରଣା ଜିନିଷ ବର୍ଷକ ପାଇଁ ଏଇ ଯାତ୍ରାରୁ କିଣା ହୁଏ। ଖଟ, ପଲଙ୍କଠାରୁ ଘର ତିଆରି ପାଇଁ ଓରା, ଶେଣୀ, ପଥି ଖୁଣ୍ଟ, ପଥି ନନ୍ଦିଆ, ସବୁ ମିଳେ। ବୋହୂ ଡମି, ଗାଁ ମାଇପଙ୍କ ସାଙ୍ଗରେ ଚାଲି ଚାଲି ଯାଇଥିଲା ତ୍ରିବେଣୀ ଯାତ୍ରାକୁ। ଗାଁରୁ ଦେଢ଼ କୋଶ ବାଟ। ବାଟରେ ଭଅଁରା ଜଙ୍ଗଲ, ପ୍ରାଚୀ ନଈ। ଅବଶ୍ୟ ମାଘ ମାସ ବେଳକୁ ପ୍ରାଚୀ ନଈର ବହୁ ଜାଗାରେ ଆଣ୍ଠୁଏ ପାଣି ଥାଏ। ଡଙ୍ଗାର ଦରକାର ହୁଏନି। ଯାତ୍ରାରୁ ଫେରି, ଡମି ଘରକୁ ଅଇଲା ବାଟରେ ଦେଖା ହେଲା, ପଣ୍ଡା ସାହିର ଧ୍ରୁବ ପଣ୍ଡାଙ୍କ ସଙ୍ଗେ। ଡମି, ବୁଢ଼ାକୁ ଭାଉଜ ଡାକନ୍ତି। ଗାଁ ମାଇପଙ୍କ ସଙ୍ଗେ ଫେରିବା ବାଟରେ, ଡମି, ଧ୍ରୁବ ବୁଢ଼ା ପଛେ ପଛେ କଥାବାର୍ତ୍ତା ହୋଇ ଫେରିଲେ। ଚାହୁଁ ଚାହୁଁ ଦିନ କେତେଟା ଭିତରେ କଥାଟା ଗାଁ ସାରା ପ୍ରଚାର ହୋଇଗଲା। ଡମିର ଗିରସ୍ତ, ବିଦେଶରୁ ଫେରି ଏକଥା ଶୁଣିଥିଲା। ସେଥିଯୋଗୁଁ ସେ ଯେ କେତେ ତାଡ଼ନା, ଭର୍ତ୍ସନା ତାଙ୍କ ଗିରସ୍ତଙ୍କ ପାଖରୁ ଶୁଣିଛନ୍ତି, ସେ କଥା ସେ ଜାଣନ୍ତି। ସେଇ ଦିନଠାରୁ ଧ୍ରୁବ ବୁଢ଼ାର ନାଁ ଶୁଣିଲେ, ଡମି ଦେହରେ ନିଆଁ ଲାଗିଯାଏ। ଘନ୍ ଦାସଙ୍କ ମାଇପ ସିନା ଥଟ୍ଟାରେ ଏଇ ପଦକ କହି ଦେଲା, ହେଲେ ପିଣ୍ଡା ଉପରେ ବସି ପାଟିକୁ ଯାହା ଆସିଲା, ତାହା ବକି ଦେଇଗଲା। ତାଙ୍କ ବକିବା ଭିତରେ ମାଳିକାରୁ କେତେ ପଦ କହିବାକୁ ଭୁଲି ନ ଥିଲେ ଡମିବୁଢ଼ୀ। ଘନ ଦାସ ମାଇପ ସଙ୍ଗେ ସାହିର ଆଉ ଜଣେ ଦୁଇଜଣ ଅଭିଆଡ଼ି ଝିଅ, ଯୋଗଦେଇ ଥଟ୍ଟା ଆରମ୍ଭ କଲା ବେଳେ, ସେମାନଙ୍କ ପାଟିକୁ ବନ୍ଦ କରି ଦେବାକୁ ଯାଇ ଡମି, ମାଳିକାରୁ ପଦେ ଦି'ପଦ ଉଦ୍ଧାର କରି କହିଲେ "ଆଲୋ, ତୁମେମାନେ ତ ଏ ଯୁଗର ଯୁଆନ୍ ଟୋକି, ତୁମେମାନେ କାହିଁକି ଏ ବୁଢ଼ୀକୁ ଥଟ୍ଟା କରିବନି। ମାଳିକା କହିଛି –

"ଦୁହିତା ବିକିରି ହେବ ସବୁରି
କୁଳ ବିଚାର ନ ଥିବ କାହାରି
କଳିରେ ଭିଆଣ ଏ ସବୁ ଜାଣ
ଧରି ମାରୁଥିବେ ପାଣ, ପଠାଣ।"

ତୁମମାନଙ୍କୁ କେଉଁ ପାଣ ପଠାଣ ନେବ, ଦେଖିବାକୁ ରହିଲା। ତମି ବୁଢ଼ୀର ପାଟି ଶୁଣି, ସମସ୍ତେ ଘର ଭିତରକୁ ଚାଲିଗଲେ। କିଏ ଜାଣେ, ବୁଢ଼ୀ କଥାକୁ କୁଆଡ଼କୁ ଟାଣିନେବ। ପଣ୍ଡା ସାହିରୁ ଫେରିଲା ବାଟରେ ସେମାନଙ୍କ ଉଚ୍ଚବାଚ ଥଟ୍ଟା ତାମସା କଥାବାର୍ତ୍ତା ବଟିଆ ବୋଉ କାନରେ ପଡ଼ିଥିଲା। ସେମାନଙ୍କ କଥା ଶୁଣି ତା' ମନଟା ଛଟପଟ ହେଲା। ସମସ୍ତେ ଦେଖେଇ ଶୁଣେଇ କହୁଥିଲେ, ହେଲେ, ସେ, ସେମାନଙ୍କ କଥାକୁ ଏ କାନରେ ପୁରାଇ ସେ କାନରେ ବାହାର କରି ଦେଉଥିଲା, ମାତ୍ର ବୈକୁଣ୍ଠ ତିଆଡ଼ି, ଯେତେବେଳେ ଦାଣ୍ଡ ଦୁଆର ମୁହଁରେ ଏଡ଼େ ବଡ଼ କଥା କହିଗଲା, ନିଆଁ ନ ଥିଲେ ଧୂଆଁ ଆସିବ କୁଆଡୁ। ଘର ଭିତରକୁ ଯାଇ, ମାଠିଆଟିକୁ କାଖରେ ଧରି କୂଅମୂଳ ପାଖେ ଠିଆ ହେଲେ। ମାଠିଆ ବେକରେ ଦଉଡ଼ି ଲଗାଇ ପକାଇଲା ବେଳେ ସେ ଭାବୁଥିଲେ, କଥା ଭିତରେ ନିଶ୍ଚୟ କିଛି ଗୋଟେ 'ନଥା' ଅଛି। ବୈକୁଣ୍ଠ ତିଆଡ଼ିଙ୍କ ପାଖକୁ ଯାଇ ବୁଝି ଆସିଲେ କ୍ଷତି କ'ଣ? ତରତର ହୋଇ ପାଣି ମାଠିଆକୁ କାଖରେ ଧରି ସେ ଫେରିଲେ ଘରକୁ। ସେଇଠୁ ସିଧା ଚାଲିଲେ ବୈକୁଣ୍ଠଙ୍କ ଘର ଆଡ଼େ। ଏକା ସାହିରେ ଘର, ତାଙ୍କ ଘର ଠାରୁ ଖଣ୍ଡେ ଦୂରରେ।

ଦାଣ୍ଡ ପିଣ୍ଡା ଉପରୁ, ବଟ ବୋଉଙ୍କୁ ଦେଖୁ ଦେଖୁ ଘର ଭିତରୁ ବୈକୁଣ୍ଠ ପାଟିକରି ତାଙ୍କ ଝିଅକୁ କହିଲେ ଖଣ୍ଡେ ମଶିଣା ଆଣିବାକୁ। ସାହି ପଡ଼ିଶା ହିସାବରେ ବଟବୋଉ ବୈକୁଣ୍ଠଙ୍କର ଆଇ ଯଦିଓ ବୟସରେ ବୈକୁଣ୍ଠ ତାଙ୍କଠାରୁ ବଡ଼। ସାହି ଭାଇରେ ଘର କରିଥିଲେ ଏମିତି ଚଳେ। ଦାଣ୍ଡ ବାରଣ୍ଡା ଉପରେ ମଶିଣା ଖଣ୍ଡିକ ବିଛାଇ ଦେଇ, ବୈକୁଣ୍ଠ କହିଲେ, କ'ଣ ପାଇଁ ଆଇ, ଏତେ ତରତରରେ ଆସିଲ? ବଟ ଖବର ସବୁ ଭଲ। ପଢ଼ାପଢ଼ି ଠିକ୍ ଚାଲିଛି। ଚାରି ଦିନ ତଳେ ମୋ ବସାକୁ ଆସିଥିଲା। ଆଗକୁ ଷାଣ୍ମାସିକ ପରୀକ୍ଷା ଅଛି। ପରୀକ୍ଷା ସାରି ଗାଁକୁ ଆସିବ ବୋଲି କହୁଥିଲା।

ବୈକୁଣ୍ଠ ଏତେ କଥା କହିସାରିବା ପରେ ବି ବଟ ବୋଉଙ୍କ ମୁହଁରେ କଥା ନ ଥିଲା। ମନରୁ ସନ୍ଦେହ ଦୂର କରିବା ପାଇଁ ସେ ପଚାରିଲେ, "ନାଇଁମ ବୈକୁଣ୍ଠ ତୁମେ ଯେଉଁ କଥାଟା କହିଲ - ସେତିକି ବେଳୁ ମୋ ମନଟା ବୁଝୁନି। ତୁମ ମୁହଁରୁ କଥାଟା ଶୁଣିଲେ ଏଠୁ ଯିବି"। ବୈକୁଣ୍ଠ କହିଲେ "ତୁମେ କାହିଁକି ଆଇ, ଏଥିରେ ଏତେ ମୁଣ୍ଡ ଖେଳାଉଛ ? ଆଜି କାଲି ଯୁଗ କେଉଁଠି ହେଲାଣି। ବଟ ସାଙ୍ଗରେ ଦୁଇ ଜଣ ମହାନ୍ତି ଘର ଝିଅ ପଢ଼ନ୍ତି। ସାଙ୍ଗ ହୋଇ କଲେଜ ଯାଆନ୍ତି, ଫେରନ୍ତି। ବେଳେବେଳେ ତାଙ୍କ ଘରକୁ ପଢ଼ାପଢ଼ି କରିବାକୁ ବଟ ଯାଏ। ଏଇୟା ତ କଥା, ଆଉ କ'ଣ" ? ତାଙ୍କ କଥା ଶୁଣି ବଟ ବୋଉ କହିଲେ "ବୁଝିଲ ବୈକୁଣ୍ଠ, ଆମେ ସିନା ଶ୍ରୀ ଅକ୍ଷର ବିବର୍ଜିତା ଅରଣା ମଇଁଷି ରହିଛି ଅନାଇ, ମଇଁଷି ପାଖକୁ ନ ଯିବୁ ଦନାଇ"ରେ - ପାଠ ଶେଷ କଲୁ। ଯେଉଁମାନେ କଲେଜରେ ପାଠ ପଢୁଛନ୍ତି, ସେମାନେ କ'ଣ ଏକାଠି ବସିବେନି, ପଢ଼ିବେନି ନା କଥାବାର୍ତ୍ତା ହେବେନି ? ଏଥିରେ କ'ଣ ଦୋଷ ?

"କିଏ ମନା କଲା ଆଇ"- ବୈକୁଣ୍ଠ କହିଲେ। ତାଙ୍କ କଥାର ଉତ୍ତର ଦେଇ ବଟ ବୋଉ କହିଲେ, - ସବୁ ଠିକ୍ ଯେ, ବଟ ନାଁରେ ଏଇ ସାଇ ମାଇପେ ଏତେ କଥା କହୁଛନ୍ତି। ଏଠି ତ ଛାଇ ପଡ଼ିଲେ ନାହି ଡେଉଁଛି। ମାତ୍ର, ତୁମେ ଯେତେବେଳେ ଦାଣ୍ଡ ଉପରୁ କଥାଟା କହିଲ, ସେତେବେଳୁ ମୋ ମନ ଘାଣ୍ଟି ଚକଟି ହେଉଛି। ସତ କଥାଟା କ'ଣ, ମୋ ରାଣଟି, ସତ କରି କହିଲ ? ସତରେ କ'ଣ ବଟ, ସେଇ ମହାନ୍ତି ଘର ଝିଅକୁ ବାହା ହେବ ବୋଲି ଠିକ୍ କରିଛି ?

ଆମର ବ୍ରାହ୍ମଣ ଘର। ସାଇ ପଡ଼ିଶାରେ ଘର କରିଛେ, ଶହେ ଆଠେ ଶାଳଗ୍ରାମ ଘରେ ପୂଜା ପାଉଛନ୍ତି। ପୂଜା ବସୁଦେବ ନ ହେଲେ, ରନ୍ଧା ଅନ୍ନ ସଙ୍ଖୁଡ଼ି ହୁଏନି, ଏଇ ଘରକୁ ବୋହୂ ହୋଇ ଆସିବ ମହାନ୍ତି ଘର ଝିଅ ? ଏକଥା କିମିତି ହେବ କହିଲ। ତୁମେମାନେ ତ ସବୁ ଭୁବନେଶ୍ୱରରେ ଅଛ। ଏକଥା କ'ଣ ଟିକିଏ ବଟକୁ ବୁଝାଇ ପାରୁନ। ଯେତେ ହେଲେ ସେ ପିଲାଟେ ନା କ'ଣ ? କଥା କହୁ କହୁ ବଟ ବୋଉଙ୍କ ଆଖିରୁ ଦି' ଧାର ଲୁହ ଗଡ଼ିଆସିଲା।

ତାଙ୍କ ଆଖିରେ ଲୁହ ଦେଖି ବୈକୁଣ୍ଠ କହିଲେ ବୁଝିଲ ଆଈ, ଏସବୁ ବାଜେ କଥାରେ ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? କ'ଣ କହିଲ ବୈକୁଣ୍ଠ- ମୁଁ ମୁଣ୍ଡ ଖେଳାଇବି ନାହିଁ ତ ମୁଣ୍ଡ ଖେଳାଇବ କିଏ ? ତା' ବାପ ବିଦେଶରେ ରହିଲେ। ସେ ଯେତେବେଳେ ଆସିବେ ଏକଥା ଶୁଣିବେ, ମୋତେ ରଖିବେ ତ ? ସେ ମନା କରୁଥିଲେ ମାଟ୍ରିକ ପରେ ପୁଅ ଚାକିରି କରୁ। କିଛି ନ ହେଲେ ଗ୍ରାମ ସେବକ, କିରାଣୀ ଚାକିରି ଖଣ୍ଡେ କରି ପାରିଥାନ୍ତା। ମୁଁ ମନା କଲି। ମାଟ୍ରିକ ପାଶ୍ ଏ ଯୁଗରେ କି ଯୋଗ୍ୟତା। କଲେଜରେ ପଢୁ ମୋର ଥିଲା ଜିଦ୍। କଲେଜରେ ପଢ଼ିଲା। ଏବେ ଯଦି ଏପରି ଅଘଟଣ ଘଟେ, ମୁଁ କିମିତି ତା' ବାପକୁ ମୁହଁ ଦେଖାଇବି। ଏ ଗାଁରେ କ'ଣ ମୋତେ ରଖିବେ ? ମୁଁ ତମ ହାତ ଧରୁଛି। ତୁମେ କିଛି ଗୋଟେ ବାଟ କର। ଭୁବନେଶ୍ୱର ଫେରି ବଟକୁ କହିବ ସେ ଯେଉଁଠି ବସିଥିବ ସେଇଠୁ ଉଠିଆସିବ। ତା' ଠାରୁ ପ୍ରକୃତ କଥା ନ ବୁଝିବା ଯାଏ ମୋ ପେଟକୁ ଭାତ ଯିବନି।

ବୈକୁଣ୍ଠ କହିଲେ ହେଲା ଆଈ, ମୁଁ ବଟକୁ ମନା କରିଦେବି। ସେ ଯେମିତି ଆଉ ସେ ମହାନ୍ତି ଘର ଝିଅମାନଙ୍କ ସାଙ୍ଗେ ନ ମିଶେ। ବୁଝୁନ ଆଈ, ଆମେ ସିନା କହୁଛେଁ, ହେଲେ ନିଆଁ ପାଖରେ ଝୋଟ ରଖିବା ଠିକ୍ ନୁହେଁ। ଯୁଗ ଯାହା ହେଲାଣି ଆଉ ଏଇ କଲେଜ ପଢୁଆ ଝିଅମାନେ ଯାହା ହେଲେଣି ସେମାନଙ୍କୁ ବୁଝିବା କଷ୍ଟକର।

ଆଠ ଦିନ ପରେ ଭୁବନେଶ୍ୱରରୁ ବଟ ଖବର ପାଇ ଗାଁକୁ ଆସିଥିଲା। ଆଖିରେ ଧାର ଧାର ଲୁହ ସଙ୍ଗେ କୋହ ମିଶା କ'ଣ୍ଠରେ ବଟ ବୋଉ ପଚାରିଲେ- "ସତ କହ, ତୁ କ'ଣ ପାଇଁ ସେ ମହାନ୍ତି ଘର ଝିଅମାନଙ୍କ ସହ ମିଶୁଛୁ? କଲେଜରେ ପାଠ ପଢ଼ିବା ପିଲା- ପାଠ ପଢ଼ିବ। ଗୋଟିଏ ବାଟରେ ଯିବ, ଗୋଟିଏ ବାଟରେ ଆସିବ। ଏ ଝିଅ ପିଲାଙ୍କ ସଙ୍ଗେ ମିଳାମିଶା, କଥାବାର୍ତ୍ତା, ହସଖୁସି, ଏସବୁ ଠିକ୍ ନୁହେଁ। ମୁଁ ଠିକେ ଠିକେ କହିଦେଉଛି, ତୁ ଯଦି ସେ ମହାନ୍ତି ଘର ଝିଅକୁ ବାହା ହେବୁ ତା' ହେଲେ ମୁଁ ଜଗନ୍ନାଥଙ୍କ ରାଣ ପକାଇ କହୁଛି-କନିଅର ମଞ୍ଜି ଗୁଡ଼ ଖାଇ ନିଶ୍ଚୟ ମରିବି। ଏଇଟା ମୋର ତ୍ରିବାର ସତ୍ୟ।"

ଆଶ୍ଚର୍ଯ୍ୟ ହୋଇ ବଟ କହିଲା- ତୁ ଏ କଥା କ'ଣ କହୁଛୁ ବୋଉ। ମହାନ୍ତି ଘର ଝିଅ ମୋ ପଢ଼ା ସାଥୀ। ଏକା କ୍ଲାସରେ ପଢୁ। ଗୋଟିଏ ଜାଗାରେ ସବୁଦିନ ଚାଲି ଚାଲି କଲେଜ ଯାଉ। କଲେଜରୁ ଫେରୁ ପାଠ ବିଷୟରେ ଆଲୋଚନା କରୁ। କିନ୍ତୁ ଯା ଭିତରେ ବାହାଘର କଥା ଆସିଲା କୁଆଡୁ? ତୋ ମୁଣ୍ଡରେ ଏସବୁ କିଏ ପୁରାଇଲା।

ତା କଥା ଶୁଣି ବଟ ବୋଉ କହିଲେ ତୁ ମୋତେ ଆଉ ଏତେ କଥା ବୁଝାନା। ମୁଁ ଠିକ୍ କଥା ଜାଣି ସାରିଲିଣି। ତୁ ଯେତେ ବେଳେ ସେମାନଙ୍କ ସାଙ୍ଗେ ବସାଉଠା କଲୁଣି ଆଉ ସେ ଘଟଣା ଘଟିବାକୁ କେତେ ଦୂର। ଆରେ, ଯୁଆନ ଝିଅଙ୍କ ପାଖେ ଦେବତା ତ ହାର ମାନିଯାଇଛନ୍ତି। ମୁନି ଋଷିମାନେ ଟଳି ପଡ଼ିଛନ୍ତି। ଆଉ ତୁ ଏମିତି କ'ଣ ଗୋଟି କି? ତୁ ଆଉ ଭୁବନେଶ୍ୱର ଯିବା ଦରକାର ନାହିଁ। ବଟ ବୋଉ ଆଉ କଥା ଶୁଣିବା ଅବସ୍ଥାରେ ନ ଥିଲେ। ଶେଷକୁ ତା' ମୁଣ୍ଡ ଛୁଇଁ ତେତିଶ କୋଟି ଦେବତାଙ୍କ ରାଣ ନିୟମ ପକାଇ ବଟ ଶପଥ କରିଥିଲା ଯେ ସେ କେବେହେଲେ ମହାନ୍ତି ଘରେ ବାହା ହେବନି କି ସେ ମହାନ୍ତି ଘର ଝିଅମାନଙ୍କ ସଙ୍ଗେ କିଛି ସମ୍ପର୍କ ରଖିବନି।

## - ଦୁଇ -

ପୁଅ ବୋହୂଙ୍କ ମଧ୍ୟରେ କଥା କଟାକଟି ଉଚ୍ଚବାଚ୍ଚ ଶୁଣି ବୁଢ଼ୀ ଘର ଭିତରୁ ବାହାର ଦୁଆରକୁ ଆସିଲେ। ନାତି ରାମଶଙ୍କରକୁ ନେଇ ଦୁଇଜଣଙ୍କ ଭିତରେ କଥାବାର୍ତ୍ତା ଚାଲିଥିଲା। ରାମଶଙ୍କର ଦିଲ୍ଲୀର ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ପି.ଏଚ.ଡି କରୁଛି। ଉତ୍କଳ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଦିଲ୍ଲୀ ଯାଇଥିଲା। ଏଇଠି ପାଠ ପଢ଼ିଲା ବେଳେ ସେ ଆଡ଼େ ନିଜେ ନିଜେ ଠିକ୍ କରିଛି ବାହା ହେବ ବୋଲି। ଯାହାକୁ ସେ ବାହା ହେବାକୁ ଠିକ୍ କରିଛି, ସେ ମଧ୍ୟ ସେଇଠି ପଢୁଛି। ଏ କଥା ବୋହୂ ଆଗରୁ ସନ୍ଦେହ କରୁଥିଲେ। ମାତ୍ର ଆଜିକାଲି ଯୁଗର ପୁଅ ଝିଅ ତ ସମାନ, ସାଙ୍ଗ ହିସାବରେ ଯିବା ଆସିବା ବୁଲିବାରେ ତ କିଛି ବାସନ୍ଦ ନାହିଁ କି ମନା ନାହିଁ। ସେହି ଝିଅ ରାମଶଙ୍କର ସଙ୍ଗେ କେତେ ଥର ତାଙ୍କ ଘରକୁ

ଆସିଛି- ଏହି ଭୁବନେଶ୍ୱର ଝିଅ। ଆଗରୁ ଏଇଠି ପଢୁଥିଲା- ଏବେ ସିନା ଦିଲ୍ଲୀରେ ପଢୁଛି। ତେବେ କଥାଟା ଏ ପର୍ଯ୍ୟନ୍ତ ପରିଷ୍କାର ଭାବେ ଜଣା ପଡ଼ିନଥିଲା। କିନ୍ତୁ ଯେଉଁ ଦିନ ଦିଲ୍ଲୀରୁ ଫେରି ପଣ୍ଡାବାବୁଙ୍କ ପୁଅ ମୁନ୍‌ମୁନ୍ ସବୁ କଥା ଖୋଲି କହିଲା ସେତେବେଳେ ପୁଅ ବୋହୂଙ୍କ ମୁଣ୍ଡ ଧରିଛି। ପୁଅ ପ୍ରଥମେ କିଛି (ମା)ବୁଢ଼ୀ ଆଗରେ କହିବାକୁ ଚାହୁଁ ନ ଥିଲେ। ମାତ୍ର ଏପଟ ସେପଟ କରି ବୋହୂ କଥାଟା ଆରମ୍ଭ କରି ବୁଢ଼ୀ କାନରେ ପକାଇ ଦେଲେ। ଯେତେହେଲେ ସେ ଏବେ ଘରର ମୁରବି। ବୁଢ଼ୀ ବଞ୍ଚି ଥାଉ ଥାଉ ତାଙ୍କ କାନକୁ କଥା ନ ଯାଇ ସେମାନେ ଏତେ ବଡ଼ କାମ କରିଦେବେ ଏ କଥା ସମ୍ଭବ ନୁହେଁ।

ବଟ ବୋଉ ସେମାନଙ୍କ କଥା ଶୁଣିଲେ, ଆଗରୁ ଯେ ସେ ସେହି ଝିଅକୁ ଦେଖି ନ ଥିଲେ ଏକଥା ନୁହେଁ। ରାମଶଙ୍କର ସଙ୍ଗେ ସେ ଝିଅ କେତେ ଥର ତାଙ୍କ ଘରକୁ ଆସିଛି। ଡାଡ଼ି ମା ଡାକି ତାଙ୍କୁ ମଧ ମୁଣ୍ଡିଆ ମାରିଛି। ପୁଅ ବୋହୂ କହୁ ନ ଥିଲେ ମଧ ବୁଢ଼ୀ ଟିକେ ଟିକେ ଅନୁମାନ କରୁଥିଲା। କିଛି ସମୟ ତାଙ୍କ କଥା ଶୁଣିଲା ପରେ ବଟ ବୋଉ କହିଲେ "ହେଲା, ଏବେ ତୁମେ ବୋହୂ ଖୋଜିଥାନ୍ତ, ସେ ଟୋକା ଏବେ ତୁମ ମୁଣ୍ଡରୁ ସେ ଦାୟୀତ୍ୱ ଓହ୍ଲାଇ ଦେଲା। ଆଜିକାଲିକା ପିଲା ତ ବାହାରେ ରହିଲେ। ବାହାରେ ପଢ଼ିଲେ। ତାଙ୍କ ମନକୁ ଯେ ଭଲ ଆସିଲା ସେ ତାକୁ ବାହା ହେବାକୁ ଠିକ୍ କଲେ। ଏଥରେ ଆମେ ଏତେ ବ୍ୟସ୍ତ ହେବାର କ'ଣ ଅଛି ?" ବୋଉ କଥା ଶୁଣି ପୁଅ କହିଲେ ସବୁ ଠିକ୍ ଯେ, ବୋଉ... କଥା କହୁ କହୁ ରହିଯିବାର ଦେଖି ବଟ ବୋଉ, ପୁଅ ମୁହଁରୁ କଥା ଛଡ଼ାଇ ନେଇ କହିଲେ "ଏଇଯା ତ, ବୋହୂ ବ୍ରାହ୍ମଣ ଘରର ଝିଅ ନୁହେଁ। କରଣ ଘର ଝିଅ। ଆରେ ଆଜିକାଲି ବ୍ରାହ୍ମଣ କ'ଣ କରଣ କ'ଣ ? ଯୁଗକୁ ନେଇ ସମାଜ, ସଂସ୍କାର କହିଲେ, ଆଚାର, ବିଚାର କାର୍ଯ୍ୟକଳାପ ବ୍ୟବହାର ଚାଲିଚଳଣକୁ ବୁଝାଏ। ଆମ କାଳରେ ଜାତି ଜାତି ଭିତରେ ସଂସ୍କାର ଗତ ତଫାତ୍ ଥିଲା ମାତ୍ର ଏବେ ସେ ସବୁ ତ କୁଆଡ଼େ ଉଭେଇ ଗଲାଣି। ଯୁଗ ସାଙ୍ଗକୁ ତାଳ ଦେଇ, ସମାଜରେ ସଂସ୍କାରଗତ ପ୍ରଭେଦ ଦୂର ହୋଇ ଯାଉଛି। ଦେଖୁନୁ ତୋ ପୁଅ ବ୍ରାହ୍ମଣ ଘରେ ଜନ୍ମ ହେଲା, ତୁ ତାକୁ ଏତେ ପଇସା ଖର୍ଚ୍ଚ

କରି ବ୍ରତକଲୁ। ପଇତା ଦେଲୁ, ସେ ଏବେ ବେକରେ ପଇତା ରଖୁଛି ନା ଠାକୁର ଘର ଦେଖୁଛି। ଆମ ସମୟରେ ଠାକୁର ଘର ଅଲଗା ଥିଲା। ନ ଗାଧେଇଲେ କେହି ଠାକୁର ଘରକୁ ଯାଉ ନ ଥିଲେ। ଏବେ ଠାକୁର ଘରକୁ ପଚାରେ କିଏ? ଯୁଆଡ଼େ ଦେଖିବ ରାସ୍ତାଘାଟ କଡ଼ରେ ଗୋଟାକ ପରେ ଗୋଟିଏ ମନ୍ଦିର। ମେଳା ଚାଲିଛି। ପ୍ରତ୍ୟେକ ଦିନ ଗାଡ଼ି ମଟରରୁ ଚାନ୍ଦା ଭେଦା ମନ୍ଦିର ତୋଳାଇବା ପାଇଁ ଆଦାୟ ହେଉଛି। ଠାକୁରଙ୍କୁ ନେଇ ବ୍ୟବସାୟ ଚାଲିଛି। ନା ଅଛି ଭକ୍ତି ନା ଅଛି ଆସକ୍ତି । ଠାକୁରଙ୍କୁ ଆଖି ଆଗରେ ରଖି ପଇସା ରୋଜଗାର କରିବା ମନ୍ଦିର ତୋଳିବା ଠାକୁର ଗଢ଼ିବାର ମୂଳମନ୍ତ୍ର। ବ୍ରାହ୍ମଣମାନେ କ'ଣ ତାଙ୍କ ପୂର୍ବ ସଂସ୍କାରକୁ ମାନୁଛନ୍ତି ନା ପାଳୁଛନ୍ତି। କରଣ ଘର ଝିଅ ହେଉ ବା ବ୍ରାହ୍ମଣ ଘର ଝିଅ ହେଉ ଯେଉଁଠି ଠିକ୍ କରିଛି ବାହାଘର ସେଇଠି ହେବ।" ଏକାଥରକେ ଏତେଗୁଡ଼ାଏ କଥା କହି ସାରିବା ପରେ ବଟ ବୋଉ ପୁଅ ବୋହୂଙ୍କ ଆଡ଼େ ଚାହିଁ ରହିଲା। ପୁଅ କି ବୋହୂ ମୁହଁରୁ କଥା ବାହାରୁ ନ ଥାଏ। ପୁଅ, ମାଙ୍କ ମୁହଁରୁ ଏକଥା ଶୁଣିଲା ପରେ ମନେ ମନେ ତା' ବାହାଘର ବେଳର କଥା ଭାବୁଥିଲା। ଯେ, ତାଙ୍କୁ କରଣ ଘର ଝିଅ ବାହା ନ ହେବାକୁ ଜଗନ୍ନାଥଙ୍କ ରାଣଠୁ ବିଷ ଖାଇବା ପର୍ଯ୍ୟନ୍ତ କହୁଥିଲା, ସେ ଏବେ ନାତି ବାହାଘର ବେଳକୁ ସ୍ୱର ବଦଳାଇଛି। ପୁଅ ଚୁପ୍ ରହିବାର ଦେଖି ବଟ ବୋଉ ପୁଅ ଉଦ୍ଦେଶ୍ୟରେ କହିଲେ, ତୁ ଯାହା ଭାବୁଛୁ ମୁଁ ଜାଣିଛି। ତୁମେମାନେ ଭାବ ଆମେ ଯେଉଁମାନେ ବୁଢ଼ାବୁଢ଼ୀ ହୋଇଯାଉଛୁ, ଆମ ଚିନ୍ତା ଧାରରେ କିଛି ପରିବର୍ତ୍ତନ ଘଟୁନି। ଯୁଗର ପରିବର୍ତ୍ତନକୁ ଆମେ ଲକ୍ଷ୍ୟ କରିପାରୁନୁ। ସେହି ପୁରୁଣା କଥାକୁ ଧରି ବସିଛୁ ଏଇଆ ତ? ଏକଥା ଭାବିବା ଭୁଲ୍। କଥାରେ ଅଛି- ଯେ ଦେଶ ଯାଇ ସେ ଫଳ ଖାଇ। ଯେଉଁ ସମୟରେ ଯେଉଁ କଥା, ଅବଶ୍ୟ ଆମ ଯୁଗର ପ୍ରଥା, କଥା କେତେ ଦୂର ଠିକ୍ ତାହା ତୁମେମାନେ ବେଶି କହିପାରିବ। ମାତ୍ର ସମୟ ସଙ୍ଗେ ପାଦ ମିଳାଇ ତୁମକୁ ଚାଲିବାକୁ ପଡ଼ିବ। ପଚାଶ ବର୍ଷ ତଳେ ଯାହା ସବୁ ଚଳଣୀ ଥିଲା ତାକୁ ଏବେ ଯଦି ଆମେ ଚଳାଇବା ପାଇଁ ଯିଦ୍ ଧରିବା କିଏ ଆମ କଥା ଶୁଣିବ? ଆମ ବେଳେ ମହାତ୍ମା ଗାନ୍ଧୀ ଦେଶକୁ ସ୍ୱାଧୀନ କଲେ। କେତେ ଲୋକ ଦେଶର ସ୍ୱାଧୀନତା ସଂଗ୍ରାମରେ

ପ୍ରାଣବଳୀ ଦେଲେ, ଦେଶ ସ୍ୱାଧୀନ ହେଲା ଦିନ ଆମେ ସବୁ ସକାଳୁ ସକାଳୁ ଗାଧୋଇ ପାଧୋଇ ଘର ଆଗ ଦୁଆର ମୁହଁରେ ଫୁଲ କୁମ୍ଭ ବସାଇ ହୁଳହୁଳି ଦେଇ ସ୍ୱାଧୀନତାକୁ ସ୍ୱାଗତ କରିଥିଲୁ। ଆମ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ଦୁବ ଚାଉଳ ପକାଇ ବଧେଇ ଜଣାଇଥିଲୁ। ସେମାନଙ୍କ ମଧ୍ୟରୁ ଏବେ ଯେଉଁମାନେ ବଞ୍ଚିଥିବେ ସେମାନେ ଏକଥା କହିବେ। ମାତ୍ର ଦେଶ ସ୍ୱାଧୀନ ହେବାର ଏତେ ବର୍ଷ ପରେ ମହାତ୍ମାଙ୍କ ପରପୁରୁଷ ଦେଶକୁ ଲୁଟୁଛନ୍ତି। ବିନା ପଇସାରେ କାମ ହେଉନି କି ବିନା ଟଙ୍କାରେ ଭୋଟ ମିଳୁନି। ତଥାପି ତ ଦେଶ ଆଗେଇ ଚାଲିଛି। ଆମେ ଯାହା କାନରେ ଶୁଣି ନ ଥିଲୁ ଏବେ ଆଖିରେ ଦେଖୁଛୁ। ସମୟ ବଦଳୁଛି ତା' ସାଙ୍ଗରେ ସବୁ ବଦଳିଯାଉଛି। ଆଉ ଚିନ୍ତା କରିବା ଦରକାର ନାହିଁ ବାହାଘର ଯୋଗାଡ଼ କର।

—୦0୦—

# ଆମେ ସବୁ ପିଲା ହୋଇଯାଇଛେ

ଡାଇନିଂ ଟେବୁଲ୍‌ର ଗୋଟେ କୋଣ ଚେୟାରରେ ବସି ରାତ୍ରୀ ଭୋଜନ ପାଇଁ ଅପେକ୍ଷା କରିଥିଲେ ଅତନୁ। ଦିଲ୍ଲୀ ଓଡ଼ିଶା ନିବାସର ଏଇ ଡାଇନିଂ ରୁମ୍‌ରେ ଓଡ଼ିଆ ଖାଦ୍ୟ ସୁଲଭ ମୂଲ୍ୟରେ ମିଳିଥାଏ। ପୂର୍ବ ରାତ୍ରୀର ପ୍ରାୟ ଶେଷ ଭାଗକୁ ଇନ୍ଦିରା ଗାନ୍ଧି ଆନ୍ତର୍ଜାତୀୟ ବିମାନ ବନ୍ଦରରେ, ସାନ ଝିଅକୁ ପାନ୍ ଆମେରିକାନ୍ ଏୟାର ବିମାନରେ ବସାଇଦେଇ ଆସିବା ପରେ, ଦିଲ୍ଲୀରେ ଦୁଇଦିନ କଟାଇ ଭୁବନେଶ୍ୱର ଫେରିବା ନିଷ୍ପତ୍ତି ନେଇ, ଓଡ଼ିଶା ନିବାସର ରହୁଥିଲେ, ଅତନୁ। ଦି଼ଲ୍ଲୀର ହୋଟେଲରେ ରହିବା ପରିବର୍ତ୍ତେ, ନିବାସରେ ରହିବାକୁ ସେ ଅଧିକ ପସନ୍ଦ କରନ୍ତି ଆଉ, ନିବାସର ଏଇ ଡାଇନିଂ ରୁମ୍‌ରେ ରାତ୍ରୀ ଭୋଜନ ବେଳେ ବହୁ ଜଣା ଅଜଣା ଓଡ଼ିଆଙ୍କ ସଙ୍ଗେ ଦେଖା ହୋଇଯାଏ। ସରକାରୀ ଚାକିରିରୁ ଅବସର ନେବାର ୫ ବର୍ଷ ହେଲାଣି। ଯେତେବେଳେ, ଓଡ଼ିଶା ସରକାରଙ୍କ ଅଧିନରେ ଚାକିରି କରୁଥିଲେ, ସେତେବେଳେ ଓଡ଼ିଶା ନିବାସ ଥିଲା, ତାଙ୍କ ଦିଲ୍ଲୀ ଗସ୍ତ ସମୟର ଆଶ୍ରୟ ସ୍ଥଳୀ। ଅବସର ନେଲା ପରେ ମଧ୍ୟ, ଅତନୁ ନିବାସର ମୋହ ଛାଡ଼ି ପାରି ନାହାନ୍ତି। ଡାଇନିଂ ଟେବୁଲରେ ବସି ସେ ଲକ୍ଷ୍ୟ କରୁଥିଲେ, କେହି ପରିଚିତ ବ୍ୟକ୍ତି ଡାଇନିଂ ହଲ୍‌ରେ ପ୍ରବେଶ କରୁଛନ୍ତି କିମ୍ବା ଅନ୍ୟ ଟେବୁଲରେ ବସିଛନ୍ତି କି ନାହିଁ। କେହି ପରିଚିତ ବ୍ୟକ୍ତି ଦେଖା ହୋଇଗଲେ ଟିକିଏ କଥାବାର୍ତ୍ତା, ଏଇୟାତ ଆଉ କ'ଣ।

ଓଡ଼ିଶା ନିବାସ, ଦିଲ୍ଲୀକୁ ଆସୁଥିବା ଭିନ୍ନ ଭିନ୍ନ ଚିନ୍ତାଧାରାର ଓଡ଼ିଆମାନଙ୍କ ଅଭୟାରଣ୍ୟ। ଆଶାୟୀ ଓ ହତାଶ ରାଜନୈତିକ ନେତାମାନଙ୍କର ସମାବେଶ ହୁଏ ଏଇଠି। ଯୁବନେତା ଓ ନେତ୍ରୀମାନେ ଦିନଯାକ ହାଇ କମାଣ୍ଡଙ୍କ ଦର୍ଶନ ପାଇଁ ବୁଲି ବୁଲି, ସନ୍ଧ୍ୟାପରେ ଡିନର ବେଳକୁ ଏକାଠି ହୁଅନ୍ତି ଏଇଠି। ନୂତନ ଭାବେ ନିର୍ବାଚିତ ହୋଇ ଆସିଥିବା ସାଂସଦମାନେ ଘର ନ ପାଇ ମାସ ମାସ ଧରି ଚାମଚାଙ୍କ ଗହଣରେ ରୁହନ୍ତି ଏଇଠି। ମନ୍ତ୍ରୀ, ବିଧାୟକ, ନେତାମାନେ ଓଡ଼ିଶାରୁ ଆସି ଭିଡ଼ ଜମାଇବାକୁ ଭଲ ପାଆନ୍ତି, ଏଇ ଯାଗାରେ। ଅଧ ରାତ୍ରୀରେ କୌଣସି କାରଣରୁ ହାତାହାତି ହେଲେ ବି ପୁଲିସ୍‌ର ପ୍ରବେଶ ନ ଥିବା ଯୋଗୁଁ

ଏ ସ୍ଥାନଟି ସେ ସମସ୍ତ କାର୍ଯ୍ୟ ପାଇଁ ସୁରକ୍ଷିତ। ଏମାନଙ୍କ ଛଡ଼ା ମଝି ମଝିଆସ୍ତରର ସରକାରୀ କର୍ମଚାରୀ, ଯେଉଁମାନଙ୍କର ଅନ୍ୟସ୍ଥାନରେ ରହିବା ସୁବିଧା ନାହିଁ, ସେମାନେ ଲୁଙ୍ଗି ଗଞ୍ଜି ପିନ୍ଧି ନିଶଙ୍କୋଚରେ ବୁଲି ପାରନ୍ତି ଏଇ ନିବାସର କରିଡ଼ରରେ। ଦିଲ୍ଲୀ ବିଶ୍ୱବିଦ୍ୟାଳୟ କିମ୍ବା ଜେ.ଏନ୍.ୟୁ.ରେ ନାମ ଲେଖାଇବାକୁ ଆସିଥିବା ଛାତ୍ର, ଛାତ୍ରୀ ସେମାନଙ୍କ ବାପମାଙ୍କ ସଙ୍ଗେ, ମଧ୍ୟ ଦିନେ ଦୁଇ ଦିନ ପାଇଁ ଏଇଠି ଆଶ୍ରୟ ନିଅନ୍ତି। ଏ ସମସ୍ତଙ୍କୁ ଛାଡ଼ିଦେଲେ ବିଦେଶ ଯିବା ଆସିବା ବାଟରେ ମଧ୍ୟ, ନିବାସକୁ ଟ୍ରାଜିଂଟ୍ ହାଉସ ଭାବେ କେତେଜଣ ବ୍ୟବହାର କରିଥାନ୍ତି। ଚିଡ଼ିଆଖାନାକୁ ଗଲେ, ଯେପରି ବିଭିନ୍ନ ପ୍ରକାର ଜନ୍ତୁଙ୍କୁ ଗୋଟିଏ ଯାଗାରେ ଦେଖିବାକୁ ମିଳେ, ଦିଲ୍ଲୀର ଓଡ଼ିଶା ନିବାସ ସେଇ ପରି ଗୋଟିଏ ସ୍ଥାନ, ଯେଉଁଠି ସବୁ ପ୍ରକାର ଓଡ଼ିଆମାନଙ୍କୁ ଦେଖିବାକୁ ମିଳିଥାଏ। ଓଡ଼ିଆମାନଙ୍କ ପାଇଁ ନିବାସ ଗୋଟିଏ ସୁନ୍ଦର ଚିଡ଼ିଆଖାନା। ଅତନୁ, ମଧ୍ୟ ସେଇ ମାନବ ରୂପୀ ଜନ୍ତୁମାନଙ୍କ ମଧ୍ୟରୁ ନିଜକୁ ଜଣେ ଭାବନ୍ତି, ନିବାସରେ ରହିବାକୁ ପସନ୍ଦ କରନ୍ତି।

କିଚେନ ବୟ, ଗତାନୁଗତିକ ଭାବେ, ଗୋଟେ ଷ୍ଟିଲ ଗ୍ଲାସକୁ ତାଙ୍କ ସାମ୍ନାରେ ସଶବ୍ଦେ ଥୋଇ ଦେଇ, ମଗରୁ ପାଣି ଢାଳି, ଗିଲାସଟିକୁ ପୂର୍ଣ୍ଣ କରି ଦେଇ ଯିବା ପରେ, ଓଡ଼ିଶା ନିବାସର ସେଇ ପରିଚିତ ଷ୍ଟିଲ୍ ଟ୍ରେ ରେ ରାତ୍ରୀ ଭୋଜନ ଧରି ଆଉଜଣେ କିଚେନ ବୟ ତାଙ୍କ ଟେବୁଲ ଉପରେ ରଖିଦେଲେ। ଓଡ଼ିଆମାନଙ୍କ ଦୁର୍ଲଭ ଖାଦ୍ୟ ଡାଲ୍‌ମା, ବାଇଗଣ ଭର୍ତ୍ତା, ବଡ଼ିଚୁରା, ବଡ଼ି ସଙ୍ଗେ କଳମ ଶାଗ, ସରୁ ଅରୁଆ ଚାଉଳର ଭାତ ପୁଞ୍ଜାଏ। ତା' ସାଙ୍ଗକୁ ଚାଉଳ ଖିରି। ସଦ୍ୟ ରନ୍ଧା ଡାଲ୍‌ମା ଉପରୁ ବାମ୍ଫ ଉଠୁଥାଏ। ତାଙ୍କ ଟେବୁଲର ଆଉଗୋଟେ ଚେୟାର ଅଧିକାର କରି ବସିଲେ, ଜଣେ ଭଦ୍ର ମହିଳା। ବାମ୍ଫ ଉଠୁଥିବା "ଡାଲ୍‌ମା" ଉପରୁ ମୁହଁ ଫେରାଇ, ସାମାନ୍ୟ ଶଙ୍କୋଚରେ ଭଦ୍ର ମହିଳାଙ୍କ ଆଡ଼େ ଚାହିଁଲେ ଅତନୁ। ବହୁ ସମୟ ଧରି ପାଟିଟା ଖଜବଜ ହେଉଥିଲା କଥାବାର୍ତ୍ତା ହେବା ପାଇଁ। ଏବେ ସାମ୍ନାରେ ଜଣେ ବୟସ୍କା ଅଥଚ ସବୁ ଦୃଷ୍ଟିରୁ ମାର୍ଜିତ ଭଦ୍ରମହିଳାଙ୍କୁ ଦେଖି କଥାଟା କେଉଁ ପ୍ରକାରେ ଆରମ୍ଭ କରିବାକୁ ଭାବୁଥିବା ବେଳେ, ତାଙ୍କ ଭାବନା ଉପରେ ପରଦା ଟାଣି, ଭଦ୍ର ମହିଳା କଥା ଆରମ୍ଭ କରି ପଚାରିଲେ "ଆପଣ ଅତନୁ ଦାସ ନାଁ? ହଠାତ୍ ତାଙ୍କ ନାମଟି

ଜଣେ ଅପରିଚିତ ମହିଳାଙ୍କ କ'ଣ୍ଠରୁ ପରିଷ୍କାର ଭାବେ ଶୁଣିଲା ପରେ, ଅତନୁ ଯାହା ଭାବୁଥିଲେ କହିବାକୁ ରହିଗଲେ। ମୁଣ୍ଡକୁ ସିଧା କରି, ମହିଳାଙ୍କ ପାଖରୁ ଅଧିକ ପ୍ରଶ୍ନ ଆଶା କରି ଅପଲକ ନୟନରେ ତାଙ୍କ ଆଡ଼େ ଚାହିଁ ରହିଲେ। ଭଦ୍ର ମହିଳା କହିଲେ "ଏଇ ଆପଣ ଖାଇବା ଟେବୁଲ ଉପରେ ରଖିଥିବା ରୁମ୍ ଚାବିରୁ ଦେଖିଲି ଆପଣଙ୍କ ରୁମ୍ ନମ୍ବର ୧୧୧୧ ମୁଁ ରହୁଛି ୧୧୧୨ ରୁମ୍‌ରେ। ୧୧୧୧ ରୁମ୍ ଅବସର ପ୍ରାପ୍ତ ଅଧିକାରୀ ଅତନୁ ଦାସଙ୍କୁ ଆଲଟ୍ କରାଯାଇଛି। ତେଣୁ ଆପଣ ଅତନୁ ଦାସ ବୋଲି ଭାବିନେଲି। ଭାବୁଛି ମୋର ଅନୁମାନ ସତ"। ବହୁ ସମୟ ଧରି, ସେ ଯେଉଁଥି ପାଇଁ ଡାଇନିଂ ଟେବୁଲ ପାଖେ ଅପେକ୍ଷା କରିଥିଲେ, ଏବେ ତାଙ୍କ ରୁମ୍ ପାଖେ ରହୁଥିବା ମହିଳାଙ୍କ ନିକଟରୁ କଥା ଶୁଣିଲା ପରେ, ଅତନୁ ପାଟି ଖୋଲି କହିଲେ"ଆପଣଙ୍କ ଅନୁମାନ ସମ୍ପୂର୍ଣ୍ଣ ସତ। ମୁଁ ଅତନୁ ଦାସ। ଓଡ଼ିଶା, ପରେ ଓଡ଼ିଶା ବାହାରେ ଦୀର୍ଘ ୩୩ ବର୍ଷ ସରକାରୀ ଚାକିରି କରି ଏବେ ଅବସର ନେଇ, ଭୁବନେଶ୍ୱରରେ ରହୁଛି। କିନ୍ତୁ ଆପଣ... ? ମୋ ନାଁ ରେଖା। ସମୟର ସମୁଦ୍ର ଗର୍ଭରେ ବୁଡ଼ିଯାଇ ଅତନୁ ଖୋଜିବାକୁ ଲାଗିଲେ ଏଇ ଶୁଣିଲା ଶୁଣିଲା ନାଁଟା । ଅତନୁଙ୍କ ଭାବନାରେ ପୂର୍ଣ୍ଣଛେଦ ଟାଣି ଭଦ୍ର ମହିଳା କହିଲେ "ଖାଇବା ଆରମ୍ଭ କରନ୍ତୁ, ଥଣ୍ଡା ହୋଇଯିବ"। ତଥାପି ଅତନୁ ତାଙ୍କ ଆଡ଼େ ପ୍ରଶ୍ନବାଚୀ ମୁହଁରେ ଚାହିଁ ରହିଛନ୍ତି। କିଚେନ ବୟ ଆଉଗୋଟେ ଷ୍ଟିଲ ଟ୍ରେରେ ଖାଦ୍ୟ ଆଣି ଭଦ୍ର ମହିଳାଙ୍କ ସାମ୍ନାରେ ଥୋଇ ଦେଇ ଗଲା। ଟ୍ରେକୁ ଚାହିଁ, ସେ କହିଲେ- ବହୁ ଦିନ ପରେ ଓଡ଼ିଆ ଖାଦ୍ୟ ଖାଇବାକୁ ମିଳିଲା। ଖାଇବା ଟେବୁଲକୁ ଆଡ଼ଜଷ୍ଟ କଲାବେଳେ, ଅତନୁ ସଂଭ୍ରମତା ସହ ପଚାରିଲେ - ଆପଣ କ'ଣ କନକପୁର ଗାଁର ମହାପାତ୍ର ସାହି...। ଅତନୁଙ୍କ ପାଟିରୁ ଏତିକି ଶୁଣୁଶୁଣୁ ଭଦ୍ର ମହିଳା କହିଲେ - "ଏବେ ଚିହ୍ନିବା ବାଟ ଠିକ୍ ଭାବେ ଧରିଛନ୍ତି "। ମୁଁ ଆପଣଙ୍କ ଗାଁ ମହାପାତ୍ର ସାହିର ଲିଲି- ରେଖା ମହାପାତ୍ର"। ବସିଥିବା ଚେୟାର ଉପରୁ ଅଧା ଉଠିପଡ଼ି, ଅତନୁ କହିଲେ, "ହ୍ୱାଟ ଏ ସରପ୍ରାଇଜ୍।"

ଲିଲି, ତୁମେ ପୁଣି ଏଠି କିପରି। ସତ କହିବାକୁ ଗଲେ, ମୁଁ ଆଦୌ ବିଶ୍ୱାସ କରିପାରୁନାହିଁ- ତୁମେ ଲିଲି... ରେଖା ମହାପାତ୍ର ବୋଲି। ପାଟନାରେ

ଥିବା ବେଳେ ପ୍ରାୟ ୨୦ ବର୍ଷ ତଳେ ଥରେ ଗାଁକୁ ଯାଇଥିଲି। ଗାଁରୁ ଶୁଣିଥିଲି, ତୁମେ ପୁରୀ ଜିଲ୍ଲାର କୌଣସି ଏକ ବେସରକାରୀ କଲେଜର ଅଧାପିକା ଥିଲ”।

ଗୋଟେ ଚାମଚ ଡାଲ୍‌ମା ପାଟିକୁ ନେଲା ବେଳେ ଲିଲି କହିଲେ “ଠିକ୍ ଶୁଣିଥିଲ। ମୁଁ ସେତେବେଳେ ନୟାଗଡ଼ କଲେଜରେ ଅଧାପିକା ଥିଲି। ୨ ବର୍ଷ ତଳେ ନିମାପଡ଼ା କଲେଜରୁ ପ୍ରିନ୍ସିପାଲ ହେବା ପରେ ଅବସର ନେଇଛି। ଅତନୁ ଆଉ କ’ଣ ପ୍ରଶ୍ନ ପଚାରିବାକୁ ଚାହୁଁଥିଲେ, ଲିଲି କହିଲେ, ତୁମ ଖାଇବା ଥଣ୍ଡା ହୋଇ ଗଲାଣି। ଖାଇ ସାର, ରୁମକୁ ଯାଇ କଥା ହେବା। ଏତେ ଦିନ ପରେ ଦେଖା ହୋଇଛି ଯେତେବେଳେ ସବୁ କଥା କ’ଣ ଏଇ ଡାଇନିଂ ହଲରେ ସରିଯିବ।” ରୁମ୍‌ରେ ବସିବା ପରେ ଲିଲି କହିଲେ ଯାଇଥିଲି ଚିକାଗୋ। ପୁଅ, ବୋହୂ ସେଇଠି ରହୁଛନ୍ତି। ସେମାନଙ୍କ ପାଖରେ ୨ ମାସ ରହିବା ପରେ ଆଜି ସକାଳୁ ଦିଲ୍ଲୀରେ ପହଞ୍ଚିଛି। କାଲି ସକାଳ ଫ୍ଲାଇଟରେ ଭୁବନେଶ୍ୱର ଯିବି। ଘରେ ତ କେହି ନାହିଁ, ମୁଁ ଏକା। ଝିଅ ବାହା ହୋଇ ବାଙ୍ଗାଲୋରରେ। କୁହ, ତୁମେ କୁଆଡ଼େ ଆସିଥିଲ ?”

ଅତନୁଠାରୁ ସବୁ ଶୁଣିଲା ପରେ, ଦୀର୍ଘ ନିଶ୍ୱାସ ଛାଡ଼ି, ଲିଲି କହିଲେ, “ହଁ ସମୟର ସ୍ରୋତ କିପରି ପ୍ରବାହମାନ, ଦେଖୁଛ ତ ? କେତେ ବର୍ଷର ବ୍ୟବଧାନରେ, ଆଜି ଏପରି ଏକ ଜାଗାରେ ଆମର ଦେଖା ତମର ମନେ ଅଛି ଅତନୁ ସେଦିନର ଆମ ଗାଁ ବିଦ୍ୟାଳୟ କଥା ?”

ଅତନୁ ମୁଣ୍ଡ ଉଠାଇ ଚାହିଁଲେ। ଲିଲି ମୁହଁରେ ବୟସର ଛାପ। ମୁଣ୍ଡ ବାଳକୁ କଳା କରି ବୟସକୁ ଯେତେ ଲୁଚାଇବାକୁ ଚେଷ୍ଟା କଲେ ମଧ୍ୟ, ମୁହଁ ଉପରେ ସରୁ ସରୁ ଭାଙ୍ଗ, ଆଖି ପତା ତଳର ପାଉଁଶିଆ ରଙ୍ଗ ବୟସକୁ ଚିହ୍ନାଇ ଦେଉଛି। ତଥାପି, ଅତନୁ ଲକ୍ଷ୍ୟ କଲେ, ବୟସକୁ ଚାହିଁ ଲିଲି ସୁନ୍ଦର ଭାବେ ତା’ର ଶରୀର ଚର୍ଯ୍ୟା କରି ପାରିଛି। ଦେଖିଲେ କେହି କହି ପାରିବେନି ଯେ, ସେ ଦୁଇବର୍ଷ ହେଲା ଅବସର ଗ୍ରହଣ କଲେଣି। ଅତନୁ ଚୁପ୍ ହୋଇ ବସିବାର ଦେଖି ଲିଲି ପଚାରିଲେ କ’ଣ କହୁନ ଯେ ? ସେଇ ପିଲା ଦିନର କଥା ମନେପଡ଼ିଲେ ପରବର୍ତ୍ତୀ ଜୀବନ ଜଞ୍ଜାଳର ସୁଖଦୁଃଖ ଯେପରି ଆଡ଼ ହୋଇଯାଆନ୍ତି। ଏବେ ବି,

ମୁଁ ସେଇ ଦିନର ସ୍ମୃତି ଭିତରେ ମୋତେ ହଜାଇ ଦେଲା ବେଳେ, ଖୁବ୍ ଆନନ୍ଦ ପାଏ। ମୋର ସମସ୍ତ ମାନସିକ ଯନ୍ତ୍ରଣା ଦୂରେଇ ଯାଏ। ଗାଁ ବିଦ୍ୟାଳୟରେ ପାଠ ପଢ଼ିଲାବେଳେ କହିଲ ଦେଖି, ଆମେ କେବେ କ'ଣ ଭାବିଥିଲେ ଆଜିର ଅବସ୍ଥାରେ ପହଞ୍ଚିବା ବୋଲି ? ଲିଲିଙ୍କ କଥା ଭିତରେ ଅତନୁ ଫେରି ଯାଇଥିଲେ ୫୦ ବର୍ଷ ତଳକୁ।

କନକପୁର ଗାଁର ବ୍ରାହ୍ମଣ ସାହିରେ ଅତନୁ ଆଉ କରଣ ସାହିରେ ଲିଲିଙ୍କ ଘର। ଦୁଇ ସାହିର ମଧ୍ୟସ୍ଥଳି, ବିଲମାଳ ଘେରା ଗୋଟିଏ ସବୁଜ ତୋଟା ଭିତରେ ଗାଁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଗୃହ। ଆମ୍ବ, ପଣସ, ନଡ଼ିଆ ଏବଂ ବିଭିନ୍ନ ପ୍ରକାର ଫୁଲ ଗଛ ଭିତରେ ବିଦ୍ୟାଳୟ ଗୃହଟି ବାହାରକୁ ଦିଶେନି। ପାଖଆଖ ଚାରି ପାଞ୍ଚ ଗାଁର ପିଲାମାନେ ଏଇ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପାଠ ପଢୁଥିଲେ। ଲିଲି, ତୃତୀୟ ଶ୍ରେଣୀରେ ପଢୁଥିବା ବେଳେ, ଅତନୁ ପଞ୍ଚମ ଶ୍ରେଣୀର ଛାତ୍ର। ସେତେବେଳେ ଗାଁ ବିଦ୍ୟାଳୟଗୁଡ଼ିକରେ ଦୁଇ ଓଳି ପାଠପଢ଼ା ହେଉଥିଲା। ସକାଳ ୭ଟାରୁ ଆରମ୍ଭ ହୋଇ ୧୧ଟା ପର୍ଯ୍ୟନ୍ତ ସକାଳୁଆ ପଢ଼ା ହେଲା ବେଳେ ଉପରବେଳା ୩ଟାରୁ ୫ଟା ପର୍ଯ୍ୟନ୍ତ ବିଦ୍ୟାଳୟ ଚାଲେ।

ଲିଲି, ପଚାରିଲା, କ'ଣ ରୁମ୍‌କୁ ଆସିବା ପରେ, ଚୁପ୍ ହୋଇଗଲ ଯେ, ମୁଁ ତୁମ ରୁମ୍‌ରେ ଏତେ ରାତିରେ ବସିଛି ବୋଲି କିଛି ଭାବୁଛ କି ? ଚିକାଗୋରୁ ଫେରିବା ପରେ ଜେଟ୍ ଲାଗ୍ ଏ ପର୍ଯ୍ୟନ୍ତ ଯାଇ ନାହିଁ। ଆଖି ମାଡ଼ି ମାଡ଼ି ପଡୁଛି। କିନ୍ତୁ ଅତନୁ ତୁମକୁ ମୁଁ କେତେ ବର୍ଷ ପରେ ଦେଖୁଛି କହିଲ। ଆମ ଗାଁ ବିଦ୍ୟାଳୟରୁ ୫ମ ଶ୍ରେଣୀ ପାଶ କଲା ପରେ, ତୁମେ ତୁମ ବାପାଙ୍କ ସାଙ୍ଗେ ଚାଲିଗଲ ସୁନ୍ଦରଗଡ଼। ୫ମ ଶ୍ରେଣୀ ପାଶ୍ କରି ମୁଁ ମାଉସୀ ଘରେ ରହି ନିମାପଡ଼ା ହାଇସ୍କୁଲରୁ ମାଟ୍ରିକ୍ ପାଶ କଲି। ରେଭେନ୍ସା କଲେଜ ହଷ୍ଟେଲରେ ରହି ଇଂରାଜୀରେ ଏମ୍.ଏ.ପାଶ୍ କଲା ପରେ ଇଂରାଜୀ ଅଧ୍ୟାପିକା ଜୀବନ ଆରମ୍ଭ କରିଥିଲି। ତା' ପରେ ସୁଖ ଦୁଃଖର ଜୀବନ। ଗାଁ ଛାଡ଼ିବା ଦିନଠାରୁ, ତୁମକୁ ମୁଁ ଆଉ ଦେଖି ନ ଥିଲି। ବେଳେ ବେଳେ ମନେ ପଡ଼େ, ମାତ୍ର ଜୀବନ ଜଞ୍ଜାଳର ଚାପ ଭିତରେ, ମାନସପଟରେ ଭାସି ଆସୁଥିବା ଦୃଶ୍ୟ ପୁଣି ଅଦୃଶ୍ୟ ହୋଇଯାଏ। ଏବେ କିନ୍ତୁ ମୁଁ ମୁକ୍ତ। କିନ୍ତୁ ଭାବନା ସବୁ, ମାନସ ପଟ୍ଟରୁ ଦୂରେଇ ଯିବାକୁ ଯେପରି ଅନିଚ୍ଛୁକ।

ନିଦୁଆ ଆଖିରେ ଲିଲି ମୁହଁଟି ଖୁବ୍ ସୁନ୍ଦର ଦିଶୁଥିବା ଭଳି ଅନୁଭବ କରି, ଅତନୁ ଖଟ ଉପରେ ବସି କହିଲେ "ସତରେ, ତୁମକୁ ଦେଖିବା ପରେ ଆମର ସେଇ ପିଲା ଦିନର ବିଦ୍ୟାଳୟ, ପିଲାଖେଳ, ସବୁକିଛି ଗୋଟିକ ପରେ ଗୋଟିଏ ମୋ ମାନସ ପଟ୍ଟରେ ଉଙ୍କି ମାରୁଛି। ମୁଁ ମଧ୍ୟ ତୁମକୁ ସେଇ ବିଦ୍ୟାଳୟ ପରଠାରୁ ଆଉ କେବେ ଦେଖିନି କିମ୍ବା ତୁମର ପରବର୍ତ୍ତୀ ପରିବର୍ତ୍ତନକୁ ମୁଁ ମୋ ମାନସ ପଟ୍ଟରେ ଦେଖି ପାରୁନି। ତୁମ କଥା ଗାଁକୁ ଗଲା ବେଳେ ପଚାରିଛି। ୨୦ ବର୍ଷ ତଳେ ତୁମ କକା ପୁଅଙ୍କଠାରୁ ଶୁଣିଥିଲି ତୁମେ ନୟାଗଡ଼ କଲେଜରେ ଅଧ୍ୟାପିକା ଥିବା କଥା। ତା'ପରେ, ସତରେ ମୁଁ ତୁମକଥା କେବେ ଭାବିନି। ଯାହା କହିଲ, ଏଇ ଜୀବନ ଜଞ୍ଜାଳ ହିଁ ଆମଠାରୁ ଆମର ଅତି ଆଦରର ସ୍ମୃତିକୁ ବହୁବର୍ଷ ଧରି ଛଡ଼ାଇ ନେଇଥିଲା। ଏବେ ମୁଁ ଭାବୁଛି ସେ ଜଞ୍ଜାଳରୁ ମୁଁ ମୁକ୍ତ। ତୁମକୁ ଆଜି ଓଡ଼ିଶା ନିବାସର ଡାଇନିଂ ଟେବୁଲ୍‌ରେ ଅତ୍ୟନ୍ତ ଅପ୍ରତ୍ୟାଶିତ ଭାବେ ଦେଖିବା ପରେ ମୁଁ କେବଳ ସେଇ ଲିଲି କଥା ଭାବୁଛି, ଯାହାକୁ ମୁଁ ଆମ ଗାଁ ବିଦ୍ୟାଳୟରେ ଛାଡ଼ି ଦେଇ ଆସିଥିଲି, ଯାହା ପାଇଁ ବେତ କୋଳି, ଭଇଁଚ କୋଳି, ତୋଳି ଆଣି ଦେଉଥିଲି। ତା' ପରେ ଲିଲିକୁ ଆଉ ମୁଁ ଦେଖିନି କି ଚିନ୍ତା କରିପାରୁନି ସେ ଲିଲି କିପରି ଥିଲା। ସେ ଲିଲିକୁ ଏବେ ୫୦ ବର୍ଷ ପରେ ଦେଖୁଛି।

ଲିଲି ବସିଥିବା ଚେୟାରକୁ ଅତନୁ ଖଟ ପାଖକୁ ଟାଣି ଆଣି ଇମୋସନାଲ ହୋଇ ପଚାରିଲେ ସେ ଦିନର କଥା ସବୁ ମନେପଡ଼େ ଅତନୁ? ପ୍ରକୃତରେ ସେ ଦିନର କଥା ମନେପଡ଼ିଲେ ମୋର ଇଚ୍ଛା ହୁଏ ସେଇ ପିଲା ଦିନକୁ ଫେରି ଯିବା ପାଇଁ...। ଲିଲିଙ୍କ କ'ଣ୍ଠ ରୁଦ୍ଧ ହୋଇ ଆସୁଥିଲା। ନିଦୁଆ ଆଖି ଓଜନିଆ ହୋଇଯାଉଥିଲା। ସେ କ'ଣ କହିବାକୁ ଚେଷ୍ଟା କରି କହି ପାରୁ ନ ଥିଲେ। ସତେ ଯେପରି ସେ ଫେରିଯାଇଛନ୍ତି ଗାଁ ବିଦ୍ୟାଳୟର ୫୦ ବର୍ଷ ତଳ ପରିବେଶ ଭିତରକୁ। ସୁନ୍ଦର ଫୁଲ ବଗିଚା, ତୋଟା, ମାଟି କାନ୍ଥର ଚାଳ ଛପର ବିଦ୍ୟାଳୟ ଗୃହ। ସବୁ ଯେପରି ତାଙ୍କ ଆଖି ଆଗରେ ନାଚି ଉଠୁଛନ୍ତି। ଚୁପ୍ ହୋଇ ବସି ଅତନୁ ଭାବୁଥିଲେ, ସେଦିନ ୧୧ ବର୍ଷ ବୟସର କିଶୋରୀ ଲିଲି କଥା। ଲିଲି ଥିଲା ସୁନ୍ଦର ଗୋଲାପ କଢ଼ିଟିଏ। ଖଣ୍ଡେ ଲାଲ୍ ରଙ୍ଗର ଫ୍ରକ୍ ତା'ର ଗୋରା ଦେହକୁ ବେଶ୍ ମାନୁଥିଲା। ପ୍ରଜାପତିଟି ପରି, ସେ ଘୂରିବୁଲୁଥିଲା, ବିଦ୍ୟାଳୟର

ସୁନ୍ଦର ବଗିଚା ମଧ୍ୟରେ। ମୁହଁ ଉଠାଇ ଅତନୁ ଲିଲି ଆଡ଼େ ଚାହିଁଲା। ସେ ଦିନର କିଶୋରୀ ଲିଲି, ଆଜିର ବୟସ୍କା ଲିଲି। ଜଣେ ମାନସପଟ୍ଟର ଲିଲି, ଆଉ ଜଣେ ସାମ୍ନାରେ ବସିଥିବା ଲିଲି। ତଥାପି ଅତନୁ ଅନୁଭବ କରୁଥିଲେ, ସମୟର ସ୍ରୋତରେ ବହୁକିଛି ହଜି ଯାଇଥିଲେ ମଧ୍ୟ ସେ ଦିନର ଓ ଆଜିଦିନ ମଧ୍ୟରେ ସାମଞ୍ଜସ୍ୟ ଅଛି। ଅତନୁ ଦେଖୁଥିଲେ ଫିକା ଲାଲ୍ ରଙ୍ଗର ଶାଢ଼ୀ ସାଙ୍ଗକୁ ମ୍ୟାଚିଂ ବ୍ଲାଉଜ, ଲିଲିଙ୍କ ଗୋରା ଦେହକୁ ସୁନ୍ଦର ମାନୁଛି। ସେ ଯେଉଁ ଲିଲିଙ୍କୁ ୫୦ ବର୍ଷ ତଳେ ଦେଖିଥିଲେ, ସେତେବେଳେ ଲିଲି ଦେହରେ ବୟସ ଭାଙ୍ଗ କି ରଙ୍ଗ ଲାଗି ନ ଥିଲା।

କିଛି ସମୟ ନୀରବ ରହିଲା ପରେ, ଲିଲି କହିଲେ- "କଣ ଏତେ ଭାବୁଛ ଅତନୁ। ବହୁଦିନ ପରେ ଦେଖୁଛ ବୋଲି କ'ଣ ମୋର ବୟସ ମୋ ରୂପର କଳନା କରୁଛ? ମନେ ଅଛି ଖରା ବେଳେ ଆମେ ବିଦ୍ୟାଳୟକୁ ଆସିଲା ପରେ ଯେଉଁ ସବୁ ଖେଳ ଖେଳୁଥିଲେ? ବୋହୂଚୋରୀ, ଡାଳମାଙ୍କୁଡ଼ି, ମିଛିମିଛିକା ବାହାଘର। କେତେଥର ତୁମେ ମୋତେ ଗଛରେ ଚଢ଼ାଇ ଦେଇ ହାତ ଧରି ଓହ୍ଲାଇ ଆଣିଛ। ବୋହୂଚୋରି ଖେଳରେ ମୁଁ ବୋହୂ ହେଉଥିଲେ। ତୁମେ ମୋ ହାତ ଧରି କେତେଥର ଟାଣି ନେଇ ଖେଳ ଜିତିଛ।

ନିଦୁଆ ଆଖିରେ, ସେଇ ଦିନର ସ୍ମୃତିକୁ ମନେ ପକାଇ ଲିଲି କହିବା ପରେ, ଅତନୁ ମାନସ ପଟ୍ଟରେ ସେଇ ଦିନର କେତୋଟି ମନେରହିବା ଭଳି ଦୃଶ୍ୟ ତାଙ୍କ ମାନସ ପଟ୍ଟରେ ଭାସି ଉଠିଲା। ଖରାଦିନେ, ଉପରବେଳା, ପିଲାମାନେ ଆଗରୁ ଆସି ବିଦ୍ୟାଳୟ ଭିତରେ ନାନା ପ୍ରକାର ଖେଳ ଖେଳୁଥିଲେ। ଶିକ୍ଷକମାନେ ଆସିବାକୁ ଡେରି ହୁଏ। ସେଇ ପିଲା ଦିନର ଖେଳ ଭିତରୁ, ଅତନୁର ମନେ ପଡ଼ିଲା ଯେଉଁ ଦିନ ଲିଲି ସାଙ୍ଗେ ତା'ର ମିଛି ମିଛିକା ବାହାଘର ହୋଇଥିଲା। ବିଦ୍ୟାଳୟର ପଛପଟ ଖୋଲା ଘରେ ସେମାନେ ବରକନିଆ ସାଜି ଥିଲେ। ଲିଲିର ସାଙ୍ଗ ଝିଅ, ବିଦ୍ୟାଳୟ ବଗିଚା, ଟଗରଫୁଲ ଗଛରୁ ଫୁଲ ତୋଳି ମାଳ ଗୁନ୍ଥିଥିଲେ। ଆଉ ଦୁଇଜଣ ବରପିତା, କନ୍ୟାପିତା ସାଜି ମିଛିମିଛିକା ବାହାଘର କରିଥିଲେ। ଅତନୁ ବେକରେ, ଲିଲି ଟଗର ଫୁଲ ମାଳ ପିନ୍ଧାଇ ଥିବା ବେଳେ ଲାଲ କନିଅର ଫୁଲର ମାଳ ଲିଲି ବେକରେ ପକାଇଥିଲା ଅତନୁ। ତା' ପରେ ଲିଲି ସାଙ୍ଗ ଝିଅ କହିଥିଲା, ବାହାଘର ପରେ "ବରକନ୍ୟା" ଏକାଠି ରୁହନ୍ତି,

ଗୋଟେ ଘରେ ଶୁଅନ୍ତି। ସେଇ ସାଙ୍ଗ ଝିଅଟି, ବିଦ୍ୟାଳୟର ପାଖ କୋଠରି ଭିତରେ ତାଳପତ୍ର ଚଟେଇ ବିଛାଇ ଦେଇ ଶେଜ ପ୍ରସ୍ତୁତ କରିଦେଲା ଏବଂ ସେଇ ଘରେ ଛାଡ଼ି ଦେଇ, କୋଠାରୀ ଆଗ କବାଟକୁ ଆଉଜେଇ ଦେଇ ବାହାରକୁ ଚାଲିଗଲା। ସେତେବେଳେ ଗାଁ ଗଣ୍ଡାର ସାମାଜିକ ଚଳଣିର ଛାପ, ବଢ଼ି ଆସୁଥିବା ଝିଅମାନଙ୍କ ଉପରେ ବହୁଳ ଭାବେ ପ୍ରଭାବ ପକାଉଥିଲା।

ଲିଲି ଆଖିରେ ଆଖିଏ ନିଦ। ଜେଟ ଲାଗିଙ୍ଗ୍ ଯାଇ ନଥାଏ। ୧୫ ଘଣ୍ଟାରୁ ଊର୍ଦ୍ଧ ସମୟ ଧରି ସେ ଏକକାଳୀନ ଚିକାଗୋରୁ-ଦିଲ୍ଲୀ ଆସିଥିଲା। ଦିନ ବେଳେ ଶୋଇବାକୁ ସମୟ ପାଇନି। ଲଗେଜ ମିସିଂ ସାଙ୍ଗକୁ ଭୁବନେଶ୍ୱର ଫ୍ଲାଇଟ୍‌ରେ ଟିକେଟ କନଫରମେସନରେ ବହୁ ସମୟ ବିତିଥିଲା। ପିଲା ଦିନର ସେଇ ମିଛି ମିଛିକିଆ ବାହାଘର ମାନସପଟ୍ଟର ଦୃଶ୍ୟ ଭିତରୁ ଫେରି, ଅତନୁ କହିଲା - "ଲିଲି, ମନେଅଛି ଆମର ମିଛି ମିଛିକିଆ ବାହାଘର କଥା। ବରକନ୍ୟା ସାଜି ତାଳପତ୍ର ଚଟେଇ ଉପରେ ଆମେ ଦୁହେଁ ଶୋଇଥିବା ବେଳେ, ବିଲହୁଡ଼ା ଉପରେ ଛତାଟାଣି ହେଡ଼ ପଣ୍ଡିତେ ଆସିବା ବେଳେ, ତୁମ ସାଙ୍ଗ କବାଟ ବାଡ଼େଇ ଆମକୁ କ'ଣ କହିଥିଲା"। ଅତନୁ ପାଟିରୁ କଥା ଛଡ଼େଇ ନେଇ ଲିଲି କହିଲେ- ଏବେ ବି ମନେ ପଡ଼େ ଅତନୁ ତାଳ ପତ୍ର ଚଟେଇ ଉପରେ ଶୋଇଥିବା ବେଳେ, ତମେ କିପରି ମୋ ବେକ ଚାରିପଟେ ହାତ ବେଢ଼ାଇ ପାଖକୁ ଟାଣି ନେଇଥିଲ ଆଉ ହେଡ଼ ପଣ୍ଡିତଙ୍କ ଆସିବା ଶୁଣି ଆମେ କିପରି ଟଗର ଫୁଲର ମାଳକୁ ଛିଣ୍ଡାଇ ଦେଇ ଫୋପାଡ଼ି ବାହାରି ଆସିଥିଲେ। ମୋ ବେକରେ ଲମ୍ୱିଥିବା ଫୁଲର ମାଳକୁ ଛିଣ୍ଡାଇ ଦେଇ ଫୋପାଡ଼ି ଦେଲା ବେଳେ, କଥା ଛଡ଼େଇ ନେଇ ଅତନୁ କହିଲେ ତୁମ ମୁହଁ ଉପରେ ଦେଖିଥିଲି ବିନ୍ଦୁ ବିନ୍ଦୁ ଝାଳ, ଆଉ ଆଖିରେ ସାମାନ୍ୟ ଲାଜ ନାଁ? ସତରେ ସେ ଦିନ ତୁମେ ଲାଜରା ହୋଇଯାଇଥଲ। ଏତିକି କହିବା ଭିତରେ ଲିଲି ପାପୁଲିକୁ ନିଜ ହାତ ମୁଠା ଭିତରେ ରଖି ଦୁହେଁ ଯେପରି ଫେରି ଯାଇଥିଲେ - ସେଇ ଦିନର ବିଦ୍ୟାଳୟର କୋଠରି ଭିତରକୁ।

"ମନେ ରଖିଥିଲ ତାହା ହେଲେ। ଘଟଣା ବହୁଳ ଜୀବନର ବହୁ ଘଟଣା ଅଦିନିଆ ଭସା ବାଦଲ ପରି ଆସି ଭାସିଯାଏ-ମନେ ରୁହେନି ମାତ୍ର ପିଲା ଦିନର ସେଇ ଅଭୁଲା ସ୍ମୃତି, ମଶାଣୀକୁ ଯିବା ଯାଏ ମନେ ଥିବ", ପାପୁଲି

ଭିତରେ ହାତ ରଖି ଲିଲି କହିଲେ। ମନେ ପଡ଼େ ଅତନୁ ମୁଁ ଯେଉଁ ଦିନ ବାହା ହୋଇ କନ୍ୟା ସାଜିଥିଲି, ସେଇ ପ୍ରତିକ୍ଷିତ ରାତିରେ ଫୁଲ ଶେଜ ଉପରେ ମୋର ମାନସପଟ୍ଟରେ ଏଇ ଦୃଶ୍ୟ ଉଙ୍କି ମାରିଥିଲା- କ୍ଷଣକ ପାଇଁ, ତୁମକୁ ମୁଁ ସେଇ ଦୃଶ୍ୟରେ ଦେଖିଥିଲି। ଛାଡ଼ ସେ ସବୁ ଏବେ ସ୍ମୃତି ହୋଇ ଗଲାଣି।

ଅତନୁଙ୍କ ହାତ ମୁଠାରୁ ନିଜ ପାପୁଲିକୁ ମୁକ୍ତ କରିବା ବେଳେ ଲିଲି କହିଲେ- "ନିଦ ଲାଗିଲାଣି ଅତନୁ। ଆଉ ମୋ ରୁମ୍‌କୁ ଯିବାକୁ ଇଚ୍ଛା ହେଉନି। ଏଇଠି ତୁମ ଖଟ ଉପରେ ଶୋଇ ପଡୁଛି।

ସକାଳ ୬ଟା ବେଳେ ଚା ଆଣି ରୁମ୍ ବୟ କଲିଂବେଲ ମାରିବାରେ ଲିଲିଙ୍କ ନିଦ ଭାଙ୍ଗିଗଲା। ଅତନୁ ଗାଢ଼ ନିଦରେ ଶୋଇଥିଲେ ଏବଂ ତାଙ୍କର ହାତଟିଏ, ଲିଲିଙ୍କ ବେକରେ ଛନ୍ଦି ହୋଇ ଯାଇଥିଲା। ନିଜ ଦେହ ଉପରେ ଆଖି ବୁଲାଇ ନେଇ, ଲିଲି ଦେଖିଲେ ସବୁ ଠିକ୍ ଅଛି ଯାହା ଥିଲା ଗତ ରାତ୍ରୀର ଶୋଇବା ପୂର୍ବରୁ। ନିଜ ଦେହ ଉପରୁ ଅତନୁଙ୍କ ହାତଟିକୁ ଆସ୍ତେ କାଢ଼ି ଦେଇ, ସେ ଅତନୁଙ୍କୁ ନିଶବ୍ଦରେ ଉଠାଇ ଦେଇ ଗାଧୁଆ ଘରକୁ ଚାଲିଗଲେ। ଦ୍ୱିତୀୟ ଥର ପାଇଁ କଲିଂବେଲ ଦେବା ପରେ, ଅତନୁ ଉଠି କବାଟ ଖୋଲିଲେ। ଚା କପ୍‌ଟି ଥୋଇ ଦେଇ, ରୁମ ବୟ କୋଠରିରୁ ଗଲା ପରେ, ମୁହଁ ଧୋଇ ସନ୍ତର୍ପଣରେ ଗାଧୁଆ ଘରୁ ବାହାରିଲେ ଲିଲି। ଅତନୁ ରୁମ୍‌ରେ ପଡ଼ିଥିବା ଚେୟାର ଉପରେ ବସି ଚା' କପ୍ ଆଡ଼େ ଚାହିଁ, ଆଉ ଗୋଟେ କପ୍ ଚା ଆଣିବା ପାଇଁ ରୁମ୍ ବେଲ୍ ଦେଲେ। ଚେୟାରରେ ବସି ମୁହଁ ପୋଛୁ ପୋଛୁ, ଲିଲି କହିଲେ- "ଅତନୁ ଆମେ ସବୁ ପିଲା ହୋଇ ଯାଇଛେ"।

—୦○୦—

# ରହସ୍ୟ ଗଳ୍ପ

ସେଦିନ ସନ୍ଧ୍ୟାରେ, ଉଭୟ ଜାତୀୟ ଓ ସ୍ଥାନୀୟ ଟି.ଭି. ଚ୍ୟାନେଲ ଗୁଡ଼ିକରେ ସମ୍ବାଦ ପରିବେଷଣ ହେଲା "ଟେଣ୍ଡର ଫିକ୍ସିଂକୁ ନେଇ ରାଜଧାନୀରେ ଠିକାଦାରଙ୍କୁ ହତ୍ୟା। ହତ୍ୟାକାଣ୍ଡ, ସୁପାରୀ କିଲରମାନଙ୍କଦ୍ୱାରା ଘଟିଥିବା ପୁଲିସର ସନ୍ଦେହ। ଟେଣ୍ଡର ଫିକ୍ସିଂ ପଛରେ ଲମ୍ବା ହାତ। ରାଜଧାନୀ ଭୁବନେଶ୍ୱର ସହରର ହୃତପିଣ୍ଡ ଉପରେ ଦିନ ୧୧ଟା ବେଳେ ଏପରି ଜଘନ୍ୟ ହତ୍ୟାକାଣ୍ଡ ସହରର ଆଇନ ଶୃଙ୍ଖଳା ପରିସ୍ଥିତି ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଛି। ସରକାରଙ୍କ ଅପାରଗତା, ପୁଲିସର ଦୁର୍ବଳତା ଉପରେ, ବିଭିନ୍ନ ସମ୍ବାଦପତ୍ରମାନଙ୍କରେ ପ୍ରଶ୍ନ- ରାଜଧାନୀ ସହର ସାଧାରଣ ନାଗରିକଙ୍କ ପାଇଁ କେତେ ସୁରକ୍ଷିତ। ଏଇ ସହରର ଅପରାଧ ବିହାରଠାରୁ ବଳିଗଲା ଇତ୍ୟାଦି"। ସମ୍ବାଦପତ୍ରମାନଙ୍କର ପ୍ରଥମ ପୃଷ୍ଠାରେ ଏଇ ସମ୍ବାଦ ବିଭିନ୍ନ ରୂପନେଇ ପ୍ରକାଶ ପାଇ, ସହରରେ ଚାଞ୍ଚଲ୍ୟ ସୃଷ୍ଟି କଲା।

ସ୍ଥାନ- ରାଜଧାନୀଠାରୁ ପ୍ରାୟ ୧୦୦ କିଲୋମିଟର ଦୂର ପାହାଡ଼ ତଳି ଏକ ଛୋଟ ଆଦିବାସୀ ଗାଁର ଶେଷ ଭାଗରେ। ସବୁଜ ଗଛଲତାର ବେଷ୍ଟନୀ ମଧ୍ୟରେ ଏକ ଦ୍ୱିତଳ ପ୍ରାସାଦ। ବାହାରକୁ ପ୍ରାସାଦ ଦୃଶ୍ୟ ହୁଏନି। ଶାଳୁଆ କାଠର ଶକ୍ତ ଗେଟ୍। ଗେଟ୍ ପାଖରୁ ପ୍ରାୟ ୧୫୦ ମିଟର ଗଲାପରେ, ପାହାଡ଼ ପାଦ ଦେଶରେ ଗୋଟିଏ ଛୋଟ ପ୍ରାସାଦ। ଗେଟ୍ ଠାରୁ ଘର ପର୍ଯ୍ୟନ୍ତ ରାସ୍ତାର ଦୁଇ କଡ଼ରେ ବିଭିନ୍ନ ପ୍ରକାର ରଙ୍ଗ ବେରଙ୍ଗର ଫୁଲଗଛ। ପ୍ରାସାଦର ଚାରିପଟେ, ଶାଳ, ଶାଗୁଆନ, ଶିଶୁ ପ୍ରଭୃତି ଗଛ। ପ୍ରାସାଦ ନିର୍ମାଣ ହେବାର ବହୁ ପୂର୍ବରୁ ଏଇ ବୃକ୍ଷମାନ ଏଠାରେ ଥିବା ଜଣାପଡ଼େ। ଘର ପଛକୁ ଲାଗି ପାହାଡ଼। ପାହାଡ଼ର ଉଚ୍ଚତା ବେଶି ନ ହେଲେ ମଧ୍ୟ ସୁ-ଉଚ୍ଚ। ପଲ୍ଲୀ ଗାଁର ଶେଷଭାଗ ପାହାଡ଼ ତଳର ଏଇ ବାଗାନବାଡ଼ି ଯେ ଧନୀକ ଶ୍ରେଣୀ ବ୍ୟକ୍ତିଙ୍କ ବିଳାସ ପ୍ରାସାଦ ତା'ର ଆବହାୱାରୁ ଜଣାପଡ଼େ।

ଘର ଭିତର ଆଲୋକ ସଜା ଆଧୁନିକ ଧରଣର। ପୋର୍ଟିକୋ, ମଝିରେ ଲିୟନ ଆଲୁଅ। ବାରଣ୍ଡାରେ ସୁନ୍ଦର ବାର ଲାଇଟ। ବାରଣ୍ଡାକୁ ଲାଗି ଡ୍ରଇଁ

ରୁମ୍। ଶିଶୁକାଠରେ ଖୋଦେଇ ସୋଫାସେଟ୍‌ରେ ଡ୍ରଇଁ ରୁମ୍ ଫରନିସିଂ କରାଯାଇଛି। ପଲ୍ଲୀ ଗାଁକୁ ବିଜୁଳୀବତୀ ଆସି ନ ଥିଲେ ମଧ୍ୟ ଜେନେରେଟରର ସାହାଯ୍ୟରେ ସସଗ୍ର ପ୍ରାସାଦଟି ଆଲୋକିତ। ଡ୍ରଇଁରୁମ୍‌କୁ ଲାଗି ଗୋଟିଏ ଆଣ୍ଟି ରୁମ୍, ଆଟାଚ ବାଥରୁମ୍। ଡ୍ରଇଁରୁମ ଭିତରୁ ଫାଷ୍ଟ ଫ୍ଲୋର ସୁନ୍ଦର ମାର୍ବଲ ଷ୍ଟେୟାର କେସ୍ ଉପରେ ଗୋଟିଏ ବେଡରୁମ୍। ପ୍ରାସାଦଟି ବେଶ୍ ରୁଚି ସଂପନ୍ନ।

ରାଜଧାନୀରେ ଚାଞ୍ଚଲ୍ୟକର ହତ୍ୟାକାଣ୍ଡ ଘଟିବାର ରାତ୍ରୀ। ସମୟ ପ୍ରାୟ ୧୧ଟା। ଜଙ୍ଗଲ ଘେରା ପାହାଡ଼ ତଳି ଆଦିବାସୀ ଗାଁର ଅନ୍ଧକାରକୁ ଭେଦକରି ଏଇ ପ୍ରାସାଦର ଗେଟ୍ ନିକଟରେ ଗୋଟେ କଳା ସ୍କର୍ପିଓ ଗାଡ଼ି ଠିଆହେଲା। ଗାଡ଼ି ପହଞ୍ଚିବା କ୍ଷଣି, ପ୍ରାସାଦର ଦରୁଓ୍ୱାନ ଗେଟ ଖୋଲି ସାମ୍ନାରେ ବସିଥିବା ବ୍ୟକ୍ତିଙ୍କୁ କୁର୍ଣ୍ଣିସି ଜଣାଇବା ସଙ୍ଗେ, ଠିଆହେବା ପରେ, ଗାଡ଼ି ଯାଇ ରହିଲା ପୋର୍ଟିକୋ ତଳେ। ଗାଡ଼ିର ଆଗ ସିଟ୍‌ରେ ବସିଥିବା ବ୍ୟକ୍ତି ଓହ୍ଲାଇଲେ। ତାଙ୍କ ପଛ ସିଟରେ ବସିଥିବା, ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ଏ.କେ.୪୭ ରାଇଫଲ ଧରି ଓହ୍ଲାଇବା ବେଳେ, ଅନ୍ୟଜଣକ ଯାଇ ଡ୍ରଇଁରୁମର ଗେଟ୍ ଖୋଲି ଦେଲେ। ସ୍କର୍ପିଓ ଗାଡ଼ିରୁ ଓହ୍ଲାଇଥିବା ବ୍ୟକ୍ତି ଯେ ଏଇ ସୁନ୍ଦର ବାଗାନ ହାଉସର ମାଲିକ ତାହା, ତାଙ୍କର ହାବଭାବରୁ ସୂଚାଇ ଦେଉଥିଲା। ବେଶ୍ ହୃଷ୍ଟପୁଷ୍ଟ ଯୁବକ। ଘନ ଅନ୍ଧକାର ରାତିରେ ମଧ୍ୟ ଆଖିରେ କଳା-ଚଷମା। ହାତରେ ୫୫୫ ସିଗାରେଟ ପ୍ୟାକେଟ୍। ପରିଧାନ ବେଶ ମାର୍ଜିତ। ଡ୍ରଇଁ ରୁମର ସୋଫା ଉପରେ ବସି ଖଣ୍ଡେ ସିଗାରେଟ ଲଗାଇବା ସଙ୍ଗେ ବୁଝିନେଲେ ରାତ୍ରୀର ଆୟୋଜନ ସବୁ ଠିକ୍ ଅଛି କି ନାହିଁ। ଏଇ ସମୟରେ ଦରଓ୍ୱାନ, ଖବର ଦେଲା, ·ଗେଟ୍ ପାଖେ ଆଉ ଗୋଟେ ଗାଡ଼ିରେ ୨ଜଣ ଆସିଛନ୍ତି। ସେମାନଙ୍କୁ ସଙ୍ଗେ ସଙ୍ଗେ ଭିତରକୁ ଆସିବା ପାଇଁ ନିର୍ଦ୍ଦେଶ ଦେଇ, ଡ୍ରଇଁରୁମର ପରଦା ଆଢ଼େଇ ଯୁବକ ଜଣଙ୍କ ବାରଣ୍ଡା ଉପରେ, ଆଗନ୍ତୁକଙ୍କୁ ସ୍ୱାଗତ ଜଣାଇବା ପାଇଁ ଅପେକ୍ଷା କରି ଠିଆ ହେଲେ।

ମାରୁତି ଜେନ୍‌ରୁ ୨ଜଣ ଆଗନ୍ତୁକ ଓହ୍ଲାଇବା ପରେ, ବାରଣ୍ଡା ଉପରୁ ଯୁବକ ଜଣକ ସେମାନଙ୍କୁ ସ୍ୱାଗତ ଜଣାଇବା ସଙ୍ଗେ ଡ୍ରଇଁରୁମକୁ ନେଇ ଆସିଲେ। ଆଗନ୍ତୁକ ଦୁଇଜଣଙ୍କ ମଧ୍ୟରୁ ପ୍ରଥମ ଭଦ୍ରବ୍ୟକ୍ତିଙ୍କ ବୟସ ଆନୁମାନିକ ୪୫ ବର୍ଷ। ପିନ୍ଧିଥିଲେ ସଫେଦ ଲମ୍ବା କୁର୍ତ୍ତା ଆଉ ପାଇଜାମା। ଦେଖିଲେ ଯେ କେହି

ତାଙ୍କୁ ଜଣେ ପ୍ରତିଷ୍ଠିତ ରାଜନେତା ବୋଲି ନିଃସନ୍ଦେହରେ କହି ପାରିବ। ଦ୍ୱିତୀୟ ଆଗନ୍ତୁକ ଜଣକ ଯୁବକ। ବୟସ ପାଖାପାଖି ୩୫ ରୁ ୩୬ ବର୍ଷ ଭିତରେ। ପୋଷାକ ପତ୍ର ଏବଂ ଚାଲିରେ ସଂଭ୍ରମତା ପ୍ରକାଶ ପାଉଥାଏ। ବାରଣ୍ଡା ଉପରକୁ ଉଠିଲା ବେଳେ, ପ୍ରତ୍ୟେକ ପଦପାତ ପରେ ଯେପରି ସେ ଅସୁସ୍ଥତା ଅନୁଭବ କରୁଥାନ୍ତି। ମୁହଁ ଉପରେ ଅଜଣା ଆତଙ୍କ, ଭୟର ଛାପ। ତାଙ୍କ ଚାଲି, ପୋଷାକ ଏବଂ ହାବଭାବରୁ ତାଙ୍କୁ ଜଣେ ସରକାରୀ ଅଧିକାରୀ ବୋଲି ଧରାଯାଇ ପାରେ। ବୈଠକଖାନାର ସୋଫା ଉପରେ ୩ଜଣ ବସିଲାପରେ, କିଛି ସମୟ ପାଇଁ କାହା ମୁହଁରେ କଥା ନ ଥିଲା। ମୁଣ୍ଡ ଉପରେ ପୁରା ସ୍ପିଡ଼ରେ ଦୁଇଟି ଫ୍ୟାନ ଘୁରୁଥିଲେ ମଧ ୩ଜଣଙ୍କ କପାଳ ଉପରେ ସ୍ୱେଦ ବିନ୍ଦୁ, ସେମାନଙ୍କ ମନଭିତରର ଆବେଗ ଓ ଆଶଙ୍କାକୁ ସୂଚାଇ ଦେଉଥାଏ।

ନୀରବତା ଭଗ୍ନ କରି ପ୍ରଥମ ବ୍ୟକ୍ତି ଜଣକ (ସ୍କର୍ପିଓରେ ଆସିଥିବା) ଆଗନ୍ତୁକ ଦୁଇଜଣଙ୍କ ଆଡ଼େ ଚାହିଁ ପ୍ରଶ୍ନ କଲେ "ଏବେ କ'ଣ କରିବା କୁହନ୍ତୁ? ଆଜି ସନ୍ଧ୍ୟାରେ ପ୍ରତ୍ୟେକ ଟି.ଭି. ଚ୍ୟାନେଲ ଏବଂ ସ୍ଥାନୀୟ ସମ୍ବାଦପତ୍ରମାନଙ୍କରେ ଘଟଣା ସମ୍ପର୍କରେ ଲମ୍ବା ଲମ୍ବା ବିବରଣୀ ପ୍ରକାଶ ପାଇଛି। ସରକାରଙ୍କ ବିରୋଧରେ ଖବର କାଗଜସବୁ ଯାହା ଲେଖିଛନ୍ତି, ତା' ତ ଆପଣମାନେ ସନ୍ଧ୍ୟା ଖବରକାଗଜରୁ ପଢ଼ିଥିବେ। ପୁଲିସ ଉପରେ ଚାପ। ଅଳ୍ପ ଦିନ ମଧ୍ୟରେ ଅପରାଧୀଙ୍କୁ ଧରି ନ ପାରିଲେ ସମଗ୍ର ପୋଲିସ ବିଭାଗ ଏବଂ ସରକାର ବଦ୍‌ନାମ ହେବେ। ଆଗକୁ ବିଧାନସଭା ଅଧିବେସନ। ଆପଣମାନେତ ଏ ସମ୍ପର୍କରେ ଭାବିଥିବେ। ଏହାର କିଛି ଗୋଟେ ବାଟ କରିବାକୁ ପଡ଼ିବ। ଆପଣମାନେ ତ ଅଭିଜ୍ଞ ବ୍ୟକ୍ତି ଯାହା ଖର୍ଚ୍ଚ ହେବ ମୁଁ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ମାତ୍ର ଏ ମାମଲାରେ ମୋ ନାଁ ଯେପରି ନ ଆସେ କିମ୍ବା ମୋ ଦଳର ସଂପର୍କ ଏଥିରେ ଅଛି ବୋଲି ଯେପରି ଜଣା ନ ପଡ଼େ।"

ପ୍ରଥମ ଆଗନ୍ତୁକ, ପ୍ରଶ୍ନର ଉତ୍ତର ଦେଇ କହିଲେ, ତା' ତ ନିଶ୍ଚିତ। ଆମକୁ ଯାହା କରିବାକୁ ହେବ, ତା'ର ନିଷ୍ପତ୍ତି ଆଜି ଏବଂ ଏଇଠାରେ ହିଁ କରିବାକୁ ପଡ଼ିବ। ହାତରେ ସମୟ ବହୁତ କମ। ସେଥିପାଇଁ ସାଙ୍ଗରେ ଦେଓବାବୁଙ୍କୁ ଧରି ଆସିଛି। ସମସ୍ତେ ଜାଣନ୍ତି, ସେ ମାମଲାର ତଦନ୍ତ ପାଇଁ

ଯାଇଛନ୍ତି। ଆପଣ ତ ତାଙ୍କୁ ଜାଣନ୍ତି ଯଦିଓ ସାମ୍ନାସାମ୍ନି ଦେଖା କେବେ ହୋଇ ନ ଥିଲା। ତାଙ୍କର ବଦଳି ବନ୍ଦ କରିବା ପାଇଁ ଆପଣ ତ ମୋ କଥା ଅନୁସାରେ ସବୁ ବ୍ୟବସ୍ଥା କରିଥିଲେ। ଏବେ, ସେ କୁହନ୍ତୁ କ'ଣ କଲେ ପୁଲିସ ବିଭାଗ ଚାପ ମୁକ୍ତ ହେବ, ସରକାରଙ୍କ ମୁହଁ ବିଧାନସଭାରେ ରହିବ ଏବଂ ଆପଣଙ୍କ ହାତ ଏହି ମାମଲାରେ ଥିବା କଥା ଭଗବାନ ସୁଧା ଜାଣି ପାରିବେ ନାହିଁ।

ଗମ୍ଭୀର ପରିବେଶକୁ ସାମାନ୍ୟ ହାଲୁକା କରିବାକୁ ଯାଇ, ପ୍ରଥମ ବ୍ୟକ୍ତି ଜଣଙ୍କ ଖଣ୍ଡେ ୫୫୫ ସିଗାରେଟ ଲଗାଉ ଲଗାଉ ସିଗାରେଟ ପ୍ୟାକେଟଟି ପ୍ରଥମ ଆଗନ୍ତୁକଙ୍କ ଆଡ଼କୁ ବଢ଼ାଇ ଦେଉ ଦେଉ କହିଲେ, "ସେମିତି କୁହନ୍ତୁନି ଆଜ୍ଞା- ପ୍ରକୃତ ଘଟଣା ସମ୍ପର୍କରେ ଭଗବାନ ଜାଣନ୍ତୁ ମୋର ଆପତ୍ତି ନାହିଁ, ମାତ୍ର ମଣିଷ ନ ଜାଣନ୍ତୁ। ଏ ଯୁଗରେ ଭଗବାନଙ୍କୁ ଡରୁଛି କିଏ। ଡରୁଥିଲେ ମୁଁ କି ଆପଣମାନେ, ଏସବୁ କାର୍ଯ୍ୟ କରିବାକୁ ସାହସ କରନ୍ତେ କିପରି? ଭଗବାନଙ୍କ କଥା ଛାଡ଼ନ୍ତୁ ମଣିଷଙ୍କ କଥା ଭାବନ୍ତୁ।" ୨ୟ ଆଗନ୍ତୁକ ଏ ପର୍ଯ୍ୟନ୍ତ ଗମ୍ଭୀର ହୋଇ ବସିଥିଲେ। ପ୍ରଥମ ବ୍ୟକ୍ତିଙ୍କ କଥା ଶୁଣିଲା ପରେ ପାଟି ଫିଟାଇ କହିଲେ- ଜାତୀୟ ଟି.ଭି. ଚ୍ୟାନେଲଠାରୁ ଆରମ୍ଭ କରି ସ୍ଥାନୀୟ ଟି.ଭି ଏବଂ ସମ୍ବାଦପତ୍ରଗୁଡ଼ିକ ଯେପରି ଭାବେ ପୁଲିସ ବିଭାଗକୁ ଟାର୍ଗେଟ୍ କଲେଣି ପୁଲିସ ବିଭାଗ ନିଶ୍ଚିତ ଭାବେ ଜନସାଧାରଣଙ୍କ ନିକଟରେ ତା'ର ଭାବମୂର୍ତ୍ତିକୁ ରକ୍ଷା କରିବାକୁ ଚେଷ୍ଟା କରିବ ଏବଂ ସେ ଚେଷ୍ଟା ହେବ ଅପରାଧୀଙ୍କୁ ଧରିବା ପାଇଁ। ଅପରାଧୀ ଧରା ପଡ଼ିଗଲେ ସେଇ ଟି.ଭି ଚ୍ୟାନେଲ୍ ସାମ୍ବାଦିକମାନେ ପୁଲିସ ବିଭାଗର କାର୍ଯ୍ୟପାଇଁ ପୁଣି ଶତମୁଖ ହୋଇ ଉଠିବେ। ପ୍ରେସ କନ୍‌ଫରେନ୍‌ସକୁ ଠିକ୍ ଭାବେ ପରିଚାଳନା କରି ପାରିଲେ କାମ ଶେଷ। ତଦନ୍ତର ଫଳାଫଳକୁ କେଉଁ ଜନତା ଅପେକ୍ଷା କରୁଛି। ଏ ପ୍ରକାର ହତ୍ୟାକାଣ୍ଡରେ ତଦନ୍ତ କ'ଣ ଏତେ ଶୀଘ୍ର ସରିଯିବ ନା ତଦନ୍ତ ଶେଷ ବେଳକୁ ସାଧାରଣ ଜନତା ଏହାକୁ ମନେ ରଖିଥିବେ? ସେତେବେଳକୁ ଏହାଠାରୁ ବଳି ଆଉ ବଡ଼ ବଡ଼ ଘଟଣା ଘଟିଯାଇଥିବ।

ପ୍ରଥମ ବ୍ୟକ୍ତି ଜଣଙ୍କ ସୋଫା ଉପରୁ ଉପରକୁ ସିଗାରେଟ ଧୂଆଁର କୁଣ୍ଡଳୀ ଗୋଟିକ ପରେ ଗୋଟିଏ ଛାଡ଼ିବା ବେଳେ କହିଲେ "ତେବେ କିଛି ଚିନ୍ତା କରିଛନ୍ତି।" ୨ୟ ଆଗନ୍ତୁକ କହିଲେ "ଖାଲି ଚିନ୍ତା କରିନି, ଆସିଲାବେଳେ

ବାଟରେ ଏ ସମ୍ପର୍କରେ ବଳିୟାରସିଂହ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କରିଛି। ସେ, ଭିତିରି କଥାକୁ ଉପରେ ମ୍ୟାନେଜ କରିନେଲେ ବାକିକଥା ମୋତେ ବଳାଇବ ନାହିଁ।" ତାଙ୍କ କଥା ପରେ ପ୍ରଥମ ଆଗନ୍ତୁକ କହିଲେ "ଏଥିପାଇଁ ଆମକୁ କିଛି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ।" କେତେ ଟଙ୍କା ଦରକାର ? ପ୍ରଥମ ବ୍ୟକ୍ତି ପ୍ରଶ୍ନକଲେ। "ଆଜି ୫ ଲକ୍ଷ ଟଙ୍କା ନିଅନ୍ତୁ। ଦରକାର ପଡ଼ିଲେ ଅଧିକା ଦେବି। ଯାହା କରିବା କଥା ଶୀଘ୍ର କରନ୍ତୁ। " ଏତିକି କହି, ସେ ପଛପଟକୁ ଲକ୍ଷ୍ୟକରି ଇଙ୍ଗିତ ଦେବାରେ ଗାର୍ଡ଼ ଅଳ୍ପ ସମୟ ଭିତରେ ସ୍କର୍ପିଓ ଗାଡ଼ି ଭିତରୁ ଗୋଟିଏ ଛୋଟ ବ୍ରିଫ୍ କେସ ଧରି ଠିଆହେଲେ। ପ୍ରଥମ ବ୍ୟକ୍ତି ଦେଓ ବାବୁଙ୍କ ହାତରୁ ବ୍ରିଫ୍ କେସ ବଢ଼ାଇ ଦେବା ବେଳେ କହିଲେ "୫ ଲକ୍ଷ ଅଛି, ଦରକାର ହେଲେ ଅଧିକ ପାଇଁ ମୋତେ ଫୋନ କରିପାରନ୍ତି।" ଆପଣ ଏଇ କେତେ ଦିନ ପାଇଁ ଓଡ଼ିଶା ଛାଡ଼ି ବାହାରକୁ ଚାଲି ଯାଆନ୍ତୁ। ମଝିରେ ମଝିରେ ବଳିୟାରସିଂହ ବାବୁଙ୍କ ସଙ୍ଗେ କଣ୍ଟାକ୍ଟ ରଖିଥିବେ। ତେବେ ସାଙ୍ଗରେ ଯେଉଁ ମୋବାଇଲ ନେବେ, ସେ ମୋବାଇଲ୍ ନମ୍ବର ଯେପରି ଆପଣଙ୍କ ନାମରେ ନ ଥିବ, କିମ୍ୱା ଯେଉଁ ମୋବାଇଲରେ ସିଂହବାବୁଙ୍କୁ କଣ୍ଟାକ୍ଟ କରିବେ, ସେ ମୋବାଇଲ ଯେପରି ତାଙ୍କ ନାମରେ ନ ଥିବ। ଆପଣମାନେ ଶୁଣିଥିବେ, ମୋବାଇଲ ଫୋନରେ ହୋଇଥିବା କଥାବାର୍ତ୍ତାକୁ କିପରି ଡିସାଇଫର କରି ତଦନ୍ତକାରୀ ଅଫିସରମାନେ ମାମଲାକୁ ଡିଟେକ୍ଟ କରି ପାରୁଛନ୍ତି।

ଦ୍ୱିତୀୟ ଆଗନ୍ତୁକଙ୍କ ସତର୍କବାଣୀ ଶୁଣିବାପରେ, ପ୍ରଥମ ବ୍ୟକ୍ତି ଜଣକ ହଠାତ୍ ଠିଆ ହୋଇ ପଡ଼ି କହିଲେ "ନାଁଓ ରିଲାକ୍ସ ମଧରାତ୍ରୀରୁ ଅଧିକ ହେଲାଣି। ନୋ ମୋର ଟକ୍। ଗାର୍ଡ଼କୁ ନିର୍ଦ୍ଦେଶ ହେଇ କହିଲେ"ଯାଇ ଗାଡ଼ି ଭିତରେ ହଟ୍‌କେଶ୍ ଏବଂ ବ୍ୟାଗ ଭିତରେ ଥୁଆ ହୋଇଥିବା ସରଞ୍ଜାମ ନେଇ ଆସ। ଏଇଠି ଡିନର ଶେଷ କରିଦେଇ ଯିବା।"

କିଛିଦିନ ପରେ ...

ଭୁବନେଶ୍ୱର ଉପକଣ୍ଠ, କଟକ-ପୁରୀ ରାସ୍ତା କଡ଼ ଆଜାଦ୍ ଢାବା ରାତ୍ରୀକାଳୀନ ଗରାଖରେ ଭରପୁର। ସାମ୍ନା ରାସ୍ତା ଉପରେ କେତେ ଖଣ୍ଡ ଟ୍ରକ,

ଗାଡ଼ି ମଟର ସାଇକେଲ ଥୁଆ ହୋଇଥାଏ। ମଦ ଲାଇସେନ୍ସ ନ ଥିଲେ ମଧ୍ୟ, ଢାବା ମାଲିକ-ମଲିଆ ବାବୁ, ଗରାଖମାନଙ୍କ ଚାହିଦା ମୁତାବକ ମଦ ସର୍ଭିସ୍ କରିଥାନ୍ତି। ଏଇ ଢାବା ବାଟ ଦେଇ ଅବକାରୀ ମନ୍ତ୍ରୀ କମିଶନର ସମସ୍ତେ ଯାଆନ୍ତି, ଦେଖନ୍ତି ମାତ୍ର କେହି କେବେ ବେଆଇନ ମଦ ବିକ୍ରି ସମ୍ପର୍କରେ ପାଟି ଫିଟାଇ ନାହାନ୍ତି। ଗରାଖମାନେ ଜାଣନ୍ତି ଡାବା ମାଲିକ ମିଃ ମଲିଆ ମଦ ବିକ୍ରି କରିବା ପାଇଁ ଯେଉଁ ପ୍ରକାର ଲାଇସେନ୍ସ ଆଣିବା କଥା, ସେ ଲାଇସେନ୍ସ ନେଇ ଆସିଛନ୍ତି। ଭଲ ଖାଇବା ଏବଂ ଗରାଖମାନଙ୍କ ମନଲାଖି ମିଳୁଥିବା ମଦ ଲାଗି, ଆଜାଦ୍ ଢାବାର କାରବାର ସନ୍ଧ୍ୟା ନ'ଟା ପରେ ଜମିଉଠେ। ରାତ୍ରୀ ୧୨ଟା ବେଳକୁ କ୍ଲାଇମାକ୍ସରେ ପହଞ୍ଚେ। ସେଦିନ ହଠାତ ୨ଟା ପୁଲିସ ଗାଡ଼ିରେ ୫/୬ଜଣ ପୁଲିସ ଅଫିସର ଏବଂ ୧୦ ଜଣ ବନ୍ଧୁକଧାରୀ ପୁଲିସ କନେଷ୍ଟବଲ, ଇନିସ୍‌ପେକ୍ଟରଙ୍କ ନେତୃତ୍ୱରେ ଢାବା ଉପରେ ଚଢାଉ ହେଲା। ଗରାଖମାନେ କିଛି ବୁଝିବା ପୂର୍ବରୁ ଇନିସ୍‌ପେକ୍ଟର, ଦୁଇଜଣ ଆର୍ମଡ଼ କନେଷ୍ଟବଲ ଏବଂ ଦୁଇଜଣ ପିସ୍ତଲଧାରୀ ସବ୍‌ଇନିସ୍‌ପେକ୍ଟର ଢାବା ଭିତରେ ପ୍ରବେଶ କରି ଢାବାର ଗୋଟିଏ କୋଣ ଟେବୁଲରେ ବିଅର ପିଉଥିବା ଦୁଇଜଣ ବ୍ୟକ୍ତିଙ୍କୁ କାବୁ କରିନେଲେ। ବିନା ପାଟିତୁଣ୍ଡରେ ଘଟଣାର ଅବସାନ ଘଟିଲା। ଗରାଖମାନେ କିଛି ବୁଝିବା ପୂର୍ବରୁ ପୁଲିସ ସେଇ ଦୁଇଜଣ ବ୍ୟକ୍ତିଙ୍କୁ ପୁଲିସ ଗାଡ଼ିରେ ବସାଇ ଘଟଣାସ୍ଥଳ ଛାଡ଼ିଲେ।

ପୁଲିସ ଗାଡ଼ି ଢାବା ଛାଡ଼ିବା ପରେ ଗରାଖମାନଙ୍କ ମଧ୍ୟରେ ସରଗରମ ଆଲୋଚନା ଆରମ୍ଭ ହୋଇଗଲା। କିଏ ସେ, ସେ ଦୁଇଜଣ ଲୋକ" କ'ଣ ପାଇଁ ଏତେ ସଂଖ୍ୟାରେ ପୁଲିସ ଆସି ଢାବାକୁ ଘେରାଉ କରି, ତାଙ୍କୁ ଧରିନେଲେ। ଗରାଖମାନଙ୍କମଧ୍ୟରେ ଆଲୋଚନା ସରଗରମ ହୋଇଉଠୁଥିବା ବେଳେ, ଢାବା ମାଲିକଙ୍କୁ ଦେଖି ପ୍ରଶ୍ନ କଲେ "ମଲିଆ ବାବୁ ଘଟଣା କ'ଣ?" ହଠାତ୍ ପୋଲିସ ଆସି ଢାବା ରେଡ଼ କଲା, ଆପଣ କେଉଁଠି ଥିଲେ? ମିଃ ମଲିଆ ତାଙ୍କର ସ୍ୱଭାବ ସୁଲଭ ସ୍ୱରରେ କହିଲେ "ଆରେ ବାବୁ, ଆପଣମାନେ ତ ଭିତରେ ଥିଲେ ଯାହା ନିଜ ଆଖିରେ ସବୁ ଦେଖିଲେ, ମୁଁ ତ ଦେଶି କୁକୁଡ଼ା କାଟିବା ଲାଗି ପଛରେ ଥିଲି, ମୋତେ କ'ଣ ପଚାରୁଛନ୍ତି। ପୋଲିସ ବାଲାଏ

ଆସିଲେ, ଆଉ ଗଲେ। ଆକାଶ ମାର୍ଗରୁ ଚିଲ ଯେପରି ପୋଖରୀ ଭିତରେ ମାଛ ଠାବ କରି ଝାମ୍ପମାରି ମୁହୂର୍ତ୍ତକ ମଧ୍ୟରେ ଅନ୍ତର୍ଦ୍ଧାନ ହୋଇଯାଏ, ଏ ଘଟଣା ସେଇପରି।"

ସତକଥା - ସମସ୍ତଙ୍କ ସାମ୍ନାରେ ପୋଲିସ ଗାଡ଼ି ରହିଲା। ପୋଲିସ ବାଲା ଆସିଲେ, ଠିକ୍ ଢାବା କୋଣରେ ବସି ବିଅର ପିଉଥିବା ଲୋକ ଦୁଇଟିଙ୍କୁ ଧରି ଚାଲିଗଲେ। ଢାବା ଭିତ୍‌ରେ ସରଗରମ ହୋଇ ଉଠୁଥିବା ପରିସ୍ଥିତି ଆସ୍ତେ ଆସ୍ତେ ଶୀତଳ ହେବାକୁ ଲାଗିଲା ମାତ୍ର ଚର୍ଚ୍ଚାଟା ଖୁବ୍ ଜୋରରେ ଚାଲିଥାଏ।

ସମୟ ପ୍ରାୟ ରାତ୍ରି ୧୦ଟା। ପୁଲିସ କଣ୍ଟ୍ରୋଲ ରୁମ୍‌ରୁ ଖବର ପାଇ ବିଭିନ୍ନ ପତ୍ରପତ୍ରିକାର ସାମ୍ବାଦିକ, ଟି.ଭି. ଚ୍ୟାନେଲର ପ୍ରତିନିଧି, କ୍ୟାମେରାମ୍ୟାନମାନେ ପ୍ରେସ କନ୍‌ଫରେନ୍ସ ସ୍ଥାନରେ ପହଞ୍ଚିବାରେ ଲାଗିଥାନ୍ତି। କେହି କେହି ଖବର ପାଇ ନ ଆସି ପାରିଥିବା ଯୋଗୁ ସେମାନଙ୍କୁ ଟେଲିଫୋନରେ ଆସିବା ପାଇଁ ଅନୁରୋଧ କରାଗଲା ବେଳେ କେତେକଙ୍କ ପାଇଁ ଗାଡ଼ି ପଠାଇ ଆଣିବାର ବ୍ୟବସ୍ଥା ହେଉଥାଏ। ରାତ୍ରୀ ସାଢ଼େ ଦଶ ବେଳକୁ ପ୍ରେସ୍ କନଫରେନ୍ସ ଆରମ୍ଭ ହେଲା। ସାମ୍ବାଦିକମାନଙ୍କୁ ବ୍ରିଫିଙ୍ଗ କରୁଥିବା ପୁଲିସ ଅଧିକାରୀଙ୍କ ଟେବୁଲ ପଛପଟେ ଦୁଇ ଜଣ ବ୍ୟକ୍ତି, ଯେଉଁମାନଙ୍କର ବୟସ ପ୍ରାୟ ୪୦ ପାଖାପାଖି ହେବ, ସେମାନେ ହାତରେ ହାତକଡ଼ି ପିନ୍ଧି ଠିଆ ହୋଇଥାନ୍ତି। ସାମ୍ବାଦିକମାନଙ୍କର ଉତ୍କଣ୍ଠାର ଅବସାନ ଘଟାଇ ଏପରି ଏକ ଅସମୟରେ ଆୟୋଜିତ ପ୍ରେସ କନ୍‌ଫରେନ୍ସର ଉଦ୍ଦେଶ୍ୟ ସମ୍ପର୍କରେ ଅଧିକାରୀ ଜଣକ ପ୍ରେସ ବ୍ରିଫିଙ୍ଗ ଆରମ୍ଭ କରି କହିଲେ, "୫ ଦିନ ତଳେ ଜନପଥରେ ଯେଉଁ ଟେଣ୍ଡର ଫିକ୍ସିଂ ହତ୍ୟାକାଣ୍ଡ ଘଟିଥିଲା ଏବେ ତା'ର ପର୍ଦ୍ଦାଫାଶ ହୋଇଛି। ଏଇ ଘଟଣାରେ ଜଡ଼ିତ ଥିବା ଅପରାଧିଦ୍ୱୟଙ୍କୁ ରାଜଧାନୀ ପୋଲିସ ଗିରଫ କରିବାରେ ସମ୍ପୂର୍ଣ୍ଣ ସଫଳ ହୋଇଛି। ଆଜି ରାତ୍ରୀ ୯ଟା ସମୟରେ, ଅପରାଧୀ ଦ୍ୱୟ ରାଜଧାନୀ ଉପକଣ୍ଠ ଆଜାଦ୍ ଢାବାରେ ମଦ୍ୟପାନ କରୁଥିବା ସମୟରେ ବିଶେଷ ସୂତ୍ରରୁ ଖବର ପାଇ ପୁଲିସ ସେମାନଙ୍କୁ ଗିରଫ କରିଛି। ଏଇ ଅପରାଧି ଦ୍ୱୟଙ୍କ ନିକଟରୁ ଗୁଳିଥିବା ଦେଶି ପିସ୍ତଲ ଦୁଇଟି ମଧ ଜବତ ହୋଇଛି। ଘଟଣା ଦିନ ଏମାନେ, ହିରୋହୋଣ୍ଡା ମଟର ସାଇକେଲରେ ଆସି, ଯୁବ ଠିକାଦାର ଦ୍ୱୟଙ୍କୁ ଗୁଳି କରି ହତ୍ୟା କରିବା

କଥା ପୁଲିସ ଆଗରେ ସ୍ୱୀକାର କରିଛନ୍ତି। ପୁଲିସ ଯାହା କହୁଛି ତାହା ସତ କି ନା ଆପଣମାନେ ସେମାନଙ୍କ ନିକଟରୁ ବୁଝିପାରନ୍ତି।" ଏକାଥରକେ, ଏତେକ କହିବା ପରେ ବ୍ରିଫିଙ୍ଗ କରୁଥିବା ଅଧିକାରୀ ନିଃଶ୍ୱାସ ମାରିଲେ। ଉପସ୍ଥିତ ଥିବା ସାମ୍ବାଦିକମାନଙ୍କ ମଧ୍ୟରୁ ଜଣେ ଗିରଫ ହୋଇଥିବା ବ୍ୟକ୍ତିଙ୍କୁ ପ୍ରଶ୍ନକଲେ -

"୫ ଦିନ ତଳେ, ମୁଖ୍ୟ ମନ୍ତ୍ରୀଙ୍କ ଅଫିସ ସମ୍ମୁଖରେ ଟେଣ୍ଡର ପକାଇବାକୁ ନେଇ ଯେଉଁ ହତ୍ୟାକାଣ୍ଡ ଘଟିଥିଲା, ସେଥିରେ ଆପଣମାନେ ସଂପୃକ୍ତ ଅଛନ୍ତି କି? ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଗିରଫ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ସେମାନେ କିପରି ଏଇ ହତ୍ୟାକାଣ୍ଡ ଘଟାଇଲେ, କ'ଣ ପାଇଁ ଘଟାଇଲେ ଏବଂ ହତ୍ୟାପାଇଁ କେଉଁ ପ୍ରକାର ଶସ୍ତ୍ର ବ୍ୟବହାର କରିଥିଲେ, କେତେ ଦୂରରୁ ଠିକାଦାର ଦ୍ୱୟଙ୍କୁ ଗୁଳି କରିଥିଲେ ଏବଂ ଗୁଳି କଲାପରେ କିପରି ଘଟଣା ସ୍ଥଳରୁ ପଳାୟନ କଲେ, ସେ ସମସ୍ତ ଘଟଣାକୁ ଶୁଆବତ ଗାଇଗଲା। ସାମ୍ବାଦିକମାନଙ୍କ କେତେକ ପ୍ରଶ୍ନର ଏପଟସେପଟ ଉତ୍ତର ଦେଇଥିଲେ ମଧ୍ୟ ସେମାନେ ଯେ ହତ୍ୟା କରିଛନ୍ତି ସେ କଥା ସ୍ୱୀକାର କରିଥିଲେ। ଟି.ଭି. ଚ୍ୟାନେଲରୁ ଆସିଥିବା କ୍ୟାମେରାମ୍ୟାନମାନେ ବିଭିନ୍ନ କୋଣରୁ ସେମାନଙ୍କ ଭିଡିଓ ସୁଟିଂ କରିବା ସହ ସମଗ୍ର ପ୍ରେସ କନ୍‌ଫରେନ୍ସର ଚିତ୍ର ମଧ୍ୟ ନେଲେ। ଜଣେ ଅଧେ ସାମ୍ବାଦିକ ଗିରଫ ହୋଇଥିବା ବ୍ୟକ୍ତିଙ୍କ ବକ୍ତବ୍ୟରୁ ନିଜର ଅଭିଜ୍ଞତାରେ ସନ୍ଦେହ ଚକ୍ଷୁରେ ଦେଖିବାକୁ ଚାହିଁ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲାବେଳେ, ବ୍ରିଫିଙ୍ଗ କରୁଥିବା ଅଧିକାରୀ ଜଣକ "ଡିନର ରେଡ଼ି ରାତ୍ରୀ ଅଧିକ ହେଲାଣି" କହି ପ୍ରେସ କନ୍‌ଫରେନ୍ସ ଶେଷ କଲେ।

ପରଦିନ ପ୍ରତ୍ୟେକ ଖବର କାଗଜ ପ୍ରଥମ ପୃଷ୍ଠାରେ ମୁଖ୍ୟ ସମ୍ବାଦ ଶୀର୍ଷକ "ରାଜଧାନୀ ଟେଣ୍ଡର ଫିକ୍ସିଂ ହତ୍ୟାକାଣ୍ଡର ପର୍ଦ୍ଦାଫାସ। ପୁଲିସ ଅତ୍ୟନ୍ତ ଚତୁରତାର ସହ ହତ୍ୟାକାଣ୍ଡରେ ଜଡ଼ିତ ଥିବା ୨ଜଣ ଅପରାଧୀଙ୍କୁ କଟକ ଭୁବନେଶ୍ୱର ରାସ୍ତା କଡ଼ରେ ଥିବା ପ୍ରସିଦ୍ଧ ଆଜାଦ ଢାବାରୁ ଗିରଫ କରିଛନ୍ତି। ଅପରାଧିମାନେ ସେମାନଙ୍କ ଅପରାଧ ସ୍ୱୀକାର କରିଛନ୍ତି। ଆଜି ପୁଲିସ ସେମାନଙ୍କର ବକ୍ତବ୍ୟ ସି.ଆର.ପି.ସି.ର ୧୬୪ ଧାରାରେ ରେକର୍ଡ଼ କଲାପରେ ଅଦାଲତରେ ପେଶ୍ କରିବେ। ଏଇ ସମ୍ବାଦ ବିଭିନ୍ନ ପତ୍ର-ପତ୍ରିକା ଟି.ଭି.

ଚ୍ୟାନେଲରେ ଆସିବା ପରେ ସମସ୍ତଙ୍କ ମୁହଁରେ ପୁଲିସର ପ୍ରଶଂସା। ସଚିବାଳୟର କରିଡ଼ର ଉପରେ କଥାବାର୍ତ୍ତା ହେଉଥିବା କର୍ମଚାରୀମାନେ ଆସ୍ୱସ୍ତି ସହକାରେ କହୁଥିଲେ "ଯାହା ଭାବୁଥିଲୁ ଏଇ ହତ୍ୟାକାଣ୍ଡରେ ବିହାରରୁ ଆସିଥିବା ସୁପାରି କିଲରଙ୍କ ହାତ ଥିବା କଥା ତାହା ମିଥ୍ୟା ପ୍ରମାଣିତ ହେଲା। ଆମ ରାଜ୍ୟରେ ମଧ୍ୟ ସୁପାରୀ କିଲର ବାହାରିଲେଣି- ଇତ୍ୟାଦି"।

ସ୍ଥାନ, ଅଦାଲତ ପରିସର। ଜିଲ୍ଲା ଜଜ୍‌ଙ୍କ ଅଦାଲତ ସାମ୍ନାରେ ଜଣେ ୩୦ ବର୍ଷିୟା ଯୁବତୀ ତା'ର ୬ ବର୍ଷର ଝିଅ, ୩ ବର୍ଷର ପୁଅଙ୍କୁ ସାଙ୍ଗରେ ଧରି ଜିଲ୍ଲା ଦୌରାଜଜ୍‌ଙ୍କ ନିକଟରେ ଅଭିଯୋଗ କରିବା ପାଇଁ ଆସିଥାନ୍ତି। ଯୁବତୀଙ୍କ ଅବସ୍ଥା ଦୟନୀୟ। ପିଲା ଦୁଇଟିଙ୍କର ଅବସ୍ଥା ତତୋପରି। ସକାଳୁ ସକାଳୁ ଗାଁ ପାଖରୁ ବସ୍‌ରେ ଆସିଛନ୍ତି। ଅଭିଯୋଗ ଫର୍ଦ୍ଦ ଜଜ୍ ସାହେବଙ୍କୁ ଦେଇ ଦେଲାପରେ ଫେରିଯିବେ। ଅଇଲା ବେଳେ ପିଲା ୨ଟା ପାଟିରେ ଦିଖଣ୍ଡ ବିସ୍କୁଟ ପକାଇଥିଲେ। ଏ ପର୍ଯ୍ୟନ୍ତ ଜଜ୍ ସାହେବଙ୍କ ସାକ୍ଷାତ ମିଳି ପାରିନି। ଏଥି ମଧ୍ୟରେ ତାଙ୍କର ଅର୍ଦ୍ଦଲି, ସେମାନଙ୍କୁ କୋଠରି ସାମ୍ନା ଦୁଆର ମୁହଁ ପରଦା ପାଖରୁ ଦୂରେଇ ଠିଆ ହେବାକୁ କହି ସାରିଲେଣି। ତୃତୀୟ ଥର ପାଇଁ ଚେଷ୍ଟା କଲାବେଳେ, ପରଦା ଫାଙ୍କରୁ ଜଜ୍ ସାହେବଙ୍କ ଦୃଷ୍ଟି ମହିଳାଙ୍କ ଉପରେ ପଡ଼ିଲା। ଜଜ୍ ସାହେବଙ୍କ ନିକଟରେ ଗୁହାରୀ ଜଣେଇବାକୁ ଆସିଥିବା କଥା କହିବା ପରେ, ଜଜ୍ ସାହେବ ଆଶ୍ୱାସନା ଦେଇ ତାଙ୍କର ଯାହା କହିବାର ଅଛି, କୁହନ୍ତୁ ବୋଲି କହିଲେ-

"ହଜୁର, ମୋର ସ୍ୱାମୀ ନିର୍ଦ୍ଦୋଷ। ସେ ମର୍ଡ଼ର କେସ୍‌ରେ ଆଦୌ ସଂପୃକ୍ତ ନୁହଁ, ତାଙ୍କୁ ମିଛରେ ଟଙ୍କା ମୋହ ଦେଖାଇ ଏଇ କେଶରେ ଫସାଇ ଦିଆଯାଇଛି। ଚାରିମାସ ହେଲା, ପୁଲିସ ତାଙ୍କୁ ଗିରଫ କରି ଜେଲକୁ ପଠାଇ ଦେଇଛି ହଜୁର"। ଯୁବତୀର ଅଭିଯୋଗ ଶୁଣିବା ପରେ ଜଜ୍ ସାହେବ ପଚାରିଲେ "କେଉଁ ମର୍ଡ଼ର କେଶ କଥା କହୁଛ? ଜଜ୍ ସାହେବଙ୍କ ପ୍ରଶ୍ନର ଉତ୍ତର ଦେଇ, ଯୁବତୀ ଜଣଙ୍କ କହିଲା, "ହଜୁର ମୋ ସ୍ୱାମୀର ନାଁ ସୁରସେନ ଭୋଇ, ଗ୍ରାମ-ଦନେଇ ବିଦ୍ୟାଧରପୁର, ଥାନା-ପୁରୀସଦର। ୪ ମାସ ତଳେ ଭୁବନେଶ୍ୱରଠାରେ

ଯେଉଁ ୨ଜଣ ଠିକାଦାରଙ୍କୁ ହତ୍ୟା କରାଯାଇଥିଲା ସେଇ ହତ୍ୟାକାଣ୍ଡରେ ମୋ ସ୍ୱାମୀକୁ ଗିରଫ କରାଯାଇ ଜେଲକୁ ପଠାଇ ଦେଇଛନ୍ତି। ମୋ ସ୍ୱାମୀ ହତ୍ୟାକାରୀ ନୁହଁ। ହତ୍ୟାକାଣ୍ଡ ଘଟିଥିବା ଦିନ ସେ ଆମଗାଁ ଶିବ ମକଦମ୍‌ଙ୍କ ଘରେ କାମ କରୁଥିଲା। ପର ଘରେ କାମ କରି ହଜୁର ଆମେ ପେଟ ପୋଷୁ। ଭାଙ୍ଗ, ଗଞ୍ଜେଇ ଅଭ୍ୟାସ ଯୋଗୁଁ ସଦର ପୋଲିସ ମୋ ସ୍ୱାମୀକୁ ଥରେ ଦିଥର ଥାନାକୁ ଡାକି ନେଇଛି। ୨ବର୍ଷ ତଳେ ନଡ଼ିଆ ଚୋରି କେସରେ ୧୫ ଦିନ ପାଇଁ ସେ ଜେଲରେ ଥିଲା। ହେଲେ ହଜୁର ମର୍ଡ଼ର କରିବା କି କାହାକୁ ବାଡ଼େଇବା ଏସବୁ କାମରେ ସେ କେବେ ନ ଥାଏ। ଭୁବନେଶ୍ୱରଠାରେ ଠିକାଦାରଙ୍କୁ ମର୍ଡ଼ର କରିବାର ୩ ଦିନ ପରେ ୨ଜଣ ଲୋକ ମୋଟରସାଇକେଲରେ ଆମ ଘରକୁ ଆସିଥିଲେ। ସେମାନଙ୍କ ମଧ୍ୟରୁ ମୁଁ ଜଣକୁ ଚିହ୍ନିଛି। ତାଙ୍କ ଗାଁ ଆମ ଗାଁ ପାଖ ଦାମଦୋର ପୁର। ଆଗରୁ ସେ ମୋ ସ୍ୱାମୀଙ୍କ ପାଖକୁ ଆସିଛି। ତାଙ୍କ ସାଙ୍ଗରେ ଆଉ ଜଣେ ଧୋବ ଧାଉଳିଆ ଲୋକ ଆସିଥିଲେ। ତାଙ୍କୁ ମୁଁ ଚିହ୍ନିନି। ସେ ଦିନ ରାତିରେ ସେମାନଙ୍କ ସଙ୍ଗେ ମୋ ସ୍ୱାମୀ ଯାଇଥିଲା। ଗଲାବେଳେ ମୋତେ କିଛି କହି ନ ଥିଲା। ତା' ପରଦିନ, ଦିନ ୧୨ଟା ବେଳକୁ ସେ ସେଇ ବାବୁଙ୍କ ସାଥିରେ ମୋଟର ସାଇକେଲରେ ଆସି, ମୋତେ ଘର ଭିତରକୁ ଡାକି ନେଇ ୫ ହଜାର ଟଙ୍କା ଦେଇ କହିଲା, ବ୍ୟସ୍ତ ହେବୁନି, ମୁଁ ମାସେ, ଦିମାସ ପାଇଁ ଏ ବାବୁଙ୍କ ସାଙ୍ଗରେ ଯାଉଛି। ମୁଁ ନଥିଲା ବେଳେ, ଏଇ ପଇସାରେ ଚଳୁଥିବୁ। ମୁଁ କୁଆଡ଼େ ଯାଇଛି କାହା ସାଙ୍ଗରେ ଯାଇଛି, କିଏ ପଚାରିଲେ କିଛି କହିବୁନି। ଟଙ୍କା ସଙ୍ଗେ ଏଇ ପାଶବୁକ୍‌ଟା ରଖ। ଏତକ କହିବା ଭିତରେ ହାତରେ ଧରିଥିବା ବ୍ୟାଗ୍ ମଧ୍ୟରୁ ଗୋଟିଏ ପାଶବୁକ୍ ବାହାର କରି ଯୁବତୀ ଜଣକ ଜଜ୍ ସାହେବଙ୍କ ହାତକୁ ବଢ଼ାଇଦେଲା। ଜଜ୍ ସାହେବ, ଦେଖିଲେ, ପାଶବୁକ୍‌ରେ ୮୦ ହଜାର ଟଙ୍କା ହତ୍ୟାକାଣ୍ଡ ଘଟିବାର ୩ ଦିନ ପରେ ବ୍ୟାଙ୍କରେ ସୁରସେନ ଭୋଇ ନାମରେ ଜମା ହୋଇଛି।

ଯୁବତୀଟି ଜଜ୍ ସାହେବଙ୍କ ହାତରୁ ପାଶବୁକ୍ ନେଇ ପୁଣି କହିଲା, "ସେଇ ଦିନଠାରୁ ମୋ ସ୍ୱାମୀ ଆଉ ଘରକୁ ଫେରି ନାହାନ୍ତି। ଏବେ ଆମ

ଭୋଇ ସାହିରୁ ପାଣୁଆ ଠାରୁ ଶୁଣିଲି ମୋ ସ୍ୱାମୀ ଜେଲରେ ଅଛି। ପାଣୁଆ ସେଇ ଜେଲରେ ଥିଲା। ପାଣୁଆ କହୁଥିଲେ, ମୋ ସ୍ୱାମୀଙ୍କୁ ସେଇ ମର୍ଡ୍ଡର କେଶରେ ଫାଶୀ ଦଣ୍ଡ ହୋଇଯିବ। କିଛି ଦୋଷ ନ କରି, ସେ ଫାଶି ଖୁଣ୍ଟରେ ଝୁଲିବ ଶୁଣି, ମୋ ପାଟିକୁ ଭାତ ଗଲାନି। କ'ଣ କରିବି ବୋଲି ୨ ଦିନ କାଳ ଓପାଷ ଭୋକରେ ରହି ସେଇ ପାଣୁଆକୁ ପଚାରିବାରୁ ସେ କହିଲା ହଜୁରଙ୍କ ଆଗରେ ସତ କଥା କହିଦେବାକୁ। ମୋ ସ୍ୱାମୀକୁ ଲକ୍ଷେ ଟଙ୍କା ଦେଇ ଅସଲ ହତ୍ୟାକାରୀମାନେ ଖସିଯିବାକୁ ବସିଛନ୍ତି। ହଜୁର, ଧର୍ମାବତାର, ଏହାର ବିଚାର କରନ୍ତୁ। ନ ହେଲେ ଏ ଦିଇଟା ପିଲା ଭାସିଯିବେ ହଜୁର, ନିର୍ଦ୍ଦୋଶ ଫାଶି ଖୁଣ୍ଟରେ ଝୁଲିବ।"

ଶେଷ: - ଯୁବତୀ ଜଣଙ୍କ ବୟାନ ରେକର୍ଡ କଲା ପରେ ଜଜ୍ ସାହେବ ସମସ୍ତ ଘଟଣାରେ ତଦନ୍ତ ପାଇଁ କ୍ରାଇମବ୍ରାଞ୍ଚକୁ ଉପଯୁକ୍ତ ତଦନ୍ତ ପାଇଁ ନିର୍ଦ୍ଦେଶ ଦେଲେ। ଛ'ମାସର ତଦନ୍ତ ପରେ ତଦନ୍ତକାରୀ ସଂସ୍ଥା ଦ୍ୱାରା ସବୁକିଛି ସ୍ପଷ୍ଟ ହୋଇଗଲା।

—oOo—

# ଦି' ଟୋପା ଲୁହ

"ବାସନ୍ତୀ", ମୋ କିଶୋର ବୟସର ଏକ ଅଭୁଲା ସ୍ମୃତି। ମୁଁ ସେତେବେଳେ ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ଭୁବନେଶ୍ୱର ବି.ଜେ.ବି କଲେଜରେ ପଢୁଥାଏ। ନୂଆ ହୋଇ ମଫସଲରୁ ଭୁବନେଶ୍ୱର ପରି ଗଢ଼ି ଉଠିଥିବା ଛୋଟ ସହରକୁ ଆସି, ଆମ ଗାଁର ବନ ଭାଇନାଙ୍କ ସରକାରୀ ବସା ଘରେ ରହୁଥାଏ। ଦୁଇ ନମ୍ବର ଇଉନିଟ୍‌ରେ ତାଙ୍କ ଟାଇପ୍ ଫୋର ସରକାରୀ ବସା ଘର। ଆଗରେ ବିଜୁଳି ବିଭାଗ ସରକାରୀ ଯନ୍ତ୍ରୀଙ୍କ ଅଫିସ। ତାଙ୍କ ଅଫିସକୁ ଲାଗି ଗ୍ୟାରେଜ। ଆମ ବସା ଘରର ପଶ୍ଚିମ ପଟେ ଏକ ବିରାଟ ପଡ଼ିଆ ଥିଲା। ପଡ଼ିଆ ଭିତରଯାକ ଉଇ ହୁଙ୍କା। ମଝିରେ ଛୋଟିଆ ଚଲା ରାସ୍ତା ସେକ୍ରେଟେରୀଏଟ୍ ଆଡ଼କୁ ଲମ୍ବି ଯାଇଥାଏ। ଆଜିର ପୁରୁଣା ବସଷ୍ଟାଣ୍ଡ, ସୂଚନା ଭବନ, ଲମ୍ବା ଦୋକାନମାନ, ସେଇ ଖୋଲା ପଡ଼ିଆରେ ଗଢ଼ି ଉଠିଛି। ସେତେବେଳର ସେଇ ପଡ଼ିଆଟି ଆମର ଫୁଟବଲ ଗ୍ରାଉଣ୍ଡ ଥିଲା। କଲେଜରୁ ଆସିଲା ପରେ ଶୀତ ଦିନେ ଭଲି, ବ୍ୟାଡ଼ମିଣ୍ଟନ୍ କୋର୍ଟ ତିଆରି କରି ସେଇଠି ଖେଳୁଥିଲୁ। ବର୍ତ୍ତମାନ ସେକ୍ରେଟେରୀଏଟ୍‌ର ନିର୍ମାଣ କାର୍ଯ୍ୟ ସେତେବେଳକୁ ସରି ସରି ଆସୁଥାଏ। ଆମ ବସାଘର ପଛପଟେ ସର୍ଦ୍ଦାର ପଟେଲ ହଲ୍‌ରେ ବିଧାନସଭା ବସୁଥିଲା। ଇନ୍ଦିରା ଗାନ୍ଧୀ ପାର୍କ ଥିଲା ଖୋଲା ପଥୁରିଆ ପଡ଼ିଆ। ସେଇଠି ଅଗଷ୍ଟ ପନ୍ଦର, ଜାନୁୟାରୀ ଛବିଶକୁ ପ୍ୟାରେଡ୍ ହେଉଥିଲା। ବଡ଼ ବଡ଼ ନେତାମାନେ ଆସିଲେ ସେଇଠି ସଭା କାର୍ଯ୍ୟ ହୁଏ।

ଆମ ବସା ଚାରିପଟେ ଅମରୀ ବାଡ଼। ଅମରୀ ଗଛ କୁଆଡ଼େ ତତ୍କାଳୀନ ମୁଖ୍ୟଶାସନ ସଚୀବ ଶ୍ରୀଯୁକ୍ତ ଶିବରମଣ ସାହେବ ବାହାର ଦେଶରୁ ଆଣି ଆମ ପ୍ରଦେଶର ବି.ଡି.ଓମାନଙ୍କୁ ଦେଇଥିଲେ। ଅମରୀ ଗଛ, ପତ୍ରକୁ ସବୁଜ ସାର କରି ଗାଁ ଗଣ୍ଡାରେ (କମ୍ପୋଷ୍ଟ) ସବୁଜ ସାର ପ୍ରସାରର ଯୁଗ ଆରମ୍ଭ କରିଥିଲେ। ଯେଉଁ ବି.ଡି.ଓ. ତାଙ୍କ ବ୍ଲକରେ ଯେତେ ଅମରୀ ଗଛ ଲଗାଇ ତା'ର ପ୍ରସାର କରୁଥିଲେ ତାଙ୍କୁ ସେତିକି ପ୍ରଶଂସା ପତ୍ର ମିଳୁଥିଲା। ଭୁବନେଶ୍ୱର ସରକାରୀ ଚାକିରିଆମାନେ ସରକାରୀ ଘରର ଚାରିପଟେ ଅମରୀ ବାଡ଼ ଲଗାଇଥାନ୍ତି। ଅଳ୍ପ ପାଣିରେ ଏ ଗଛ ବଢ଼େ ଏବଂ ଖରାତରା ଏହାର କିଛି କରି ପାରେ ନାହିଁ। ମଲା ଡାଙ୍ଗରେ ବି ପାଣି ପଡ଼ିଲେ ଗଛ ପୁଣି କଅଁଳି ଉଠେ। ଭୁବନେଶ୍ୱର ପରି ଟାଙ୍ଗରା ଭୂମିକୁ ଅମରୀ ଗଛ ଠିକ୍ ସୁହାଇଥିଲା। ଅବଶ୍ୟ ପରବର୍ତ୍ତୀକାଳରେ ଏଇ ଅମରୀ ଗଛକୁ ମୂଳରୁ ମାରିବା ପାଇଁ ଔଷଧ ଖୋଜା ହୋଇ ଦିଆଗଲା। ଅମରୀଗଛ ଏପରି ମାଡ଼ିଲା

ଯେ, ତା' ଦାଉରେ ଫୁଲ, ଫଳ ଗଛ କିଛି ଉଧେଇଲା ନାହିଁ। ଆମ ବସାଘରକୁ ଏଇ ଅମରୀ ବାଡ଼ ଚାରିପଟୁ ଜଗିଥାଏ।

ସେତେବେଳେ ବି.ଜେ.ବି. କଲେଜରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ହାତରେ ଗଣିହେଲା ପରି। ପ୍ରାୟ ସମସ୍ତେ ଚାଲି ଚାଲି ଯାଆନ୍ତି। କିଏ କିମିତି ସାଇକେଲରେ ଯାଏ। ଜଣେ ଦୁଇଜଣଙ୍କୁ ଛାଡ଼ି ଦେଲେ କାର୍‌ରେ କଲେଜକୁ ଆସିବା ସଂଖ୍ୟା କମ୍ । ଆମ ସାଙ୍ଗରେ ନିରୁ ବୋଲି ଗୋଟିଏ ଝିଅ ପଢୁଥିଲା। ଦେଖିବାକୁ ଯେମିତି ସୁନ୍ଦର ବ୍ୟବହାର ମଧ ସେମିତି। ତା'ର ଲମ୍ବା ବେଣୀ ଅଣ୍ଟା ତଳକୁ ଲମ୍ବିଥାଏ। ଥରେ ଆମ କ୍ଲାସର କଳାପଟାରେ ଜଣେ ଆଶୁ କବି ମାୟାଧର ଗୋଟିଏ କବିତା ରଚନା କରି ଲେଖିଦେଲେ। ସେ କବିତାର ପ୍ରଥମ ଦୁଇ ଧାଡ଼ି ହେଲା-

"ମଲ୍ଲୀ ଫୁଲେ ଶୋଭା ନିରୁ କେଶ ପାଶ୍
କବିତା ଲୀଳାଙ୍କୁ କଲା ଉପହାସ"

ମାୟାଧର, ତା'ର ଜୀବନଯାକ ଧୋତି, ପଞ୍ଜାବୀରେ କାଟି ଦେଲା। ପାଦରେ ହାୱାଇ ଚପଲ ଛଡ଼ା କେବେ ଯୋତା କି ସାଣ୍ଡାଲ ପିନ୍ଧି ନ ଥିଲା। ରିଟାୟାର ବେଳକୁ ସେ ଗୋଟିଏ ବିଭାଗର ସିନିୟର ସେକ୍‌ସନ୍ ଅଫିସର ହୋଇଥିଲା, ମାତ୍ର ଛାତ୍ରଜୀବନଠାରୁ ପରିଣତ ବୟସ ପର୍ଯ୍ୟନ୍ତ ଗୋଟିଏ ହେଲେ କବିତା କେଖି ନ ଥିଲା। ତାକୁ ପଚାରିଲେ ସେ କହେ ଯେ ରାଧାନାଥଙ୍କ କାବ୍ୟ ଶୈଳୀରେ ଉଦ୍‌ବୁଦ୍ଧ ହୋଇ ସେ ନୀରୁର ସୌନ୍ଦର୍ଯ୍ୟକୁ କବିତା ମାଧମରେ ବର୍ଣ୍ଣନା କରିବା ଛଡ଼ା ଆଉ କିଛି ଉଦ୍ଦେଶ୍ୟ ନ ଥିଲା। ଅବଶ୍ୟ, ଏଇ କବିତା ଲେଖାପାଇଁ ସେ କବିତା, ଲୀଳା ପ୍ରଭୃତି ସହପାଠିନୀମାନଙ୍କ ଠାରୁ ଗାଳି ଶୁଣିଥିଲା। ସେଇ ନିରୁ ବେଳେବେଳେ ତାଙ୍କ ବାପାଙ୍କ କଳା ଫୋର୍ଡ କାରରେ କଲେଜକୁ ଆସେ। ତା' ଛଡ଼ା ହିନ୍ଦୋଳ ରଜାଙ୍କ ମଝିଆଁ ଝିଅ କଲେଜକୁ କାରରେ ଆସୁଥିଲେ। ରାଜାମାନଙ୍କର ସେତେବେଳେ ସ୍ୱତନ୍ତ୍ର ସୁବିଧା ଥିଲା। ତେଣୁ ତାଙ୍କ କାର୍‌ରେ ସେମାନେ ଅନ୍ୟମାନଙ୍କ ପରି ନମ୍ବର ପ୍ଲେଟ ଲଗାଉ ନ ଥିଲେ। ନମ୍ବର ପ୍ଲେଟ ଜାଗାରେ ସେମାନେ ତାଙ୍କ ରାଜ୍ୟର ନାଁ ଓ ଏବଂ ତାଙ୍କ ଗାଡ଼ିର ସଂଖ୍ୟା ଲେଖୁଥିଲେ। ହିନ୍ଦୋଳ ରାଜାଙ୍କ ମଝିଆଣୀ ଝିଅ ସେତେବେଳେ ଯେଉଁ କାରରେ କଲେଜକୁ ଆସୁଥିଲେ ସେ କାର ପଛରେ ଲେଖାଥିଲା ହିନ୍ଦୋଳ-୫୧ । ତେଣୁ କଲେଜରେ ସେ ହିନ୍ଦୋଳ-୫୧ ଭାବେ ଜଣାଶୁଣା।

ମୋର ସେତେବେଳେ ଗାଡ଼ି କଥା ଛାଡ଼, ସାଇକେଲ ବି ନ ଥିଲା। ପଦବ୍ରଜରେ ଚାଲି ଚାଲି ଏଇ ଦୁଇ ନମ୍ବରରୁ ବାହାରି କଲେଜ ପର୍ଯ୍ୟନ୍ତ ଯାଏ

ଏବଂ ଫେରେ। ଏବେ ବି ମୋର ମନେପଡୁଛି, ସେ ଚାଲିବାରେ କଷ୍ଟ ନ ଥିଲା ବୋଲି। ସନ୍ଧ୍ୟା ବେଳକୁ ବାବୁ ରତିକାନ୍ତ ତାଙ୍କ ବଡ଼ ଭାଇଙ୍କ ସାଇକେଲ ଧରି ଆସିଲେ, ଦିନେ ଦିନେ ସାଇକେଲରେ ଦି ଜଣ ବସି ସହର ବୁଲି ଆସୁ। ସହର ବୋଇଲେ, ସେତେବେଳେ ଚାରିଟା ୟୁନିଟ୍। ଲୋକ ସଂଖ୍ୟା କୋଡ଼ିଏ ହଜାର ହେବନି। ଦୋକାନ ବଜାର ସବୁ ମାର୍କେଟ ବିଲଡିଂରେ ସୀମିତ। ସେଥିରେ ପୁଣି ଅଧେ ଦୋକାନ ଘର ଖାଲି ପଡ଼ିଥାଏ। ଇଷ୍ଟେଟ ଡିପାର୍ଟମେଣ୍ଟ, ଦୋକାନ ଭଡ଼ା ଦେବା ପାଇଁ ଲୋକ ଖୋଜି ବୁଲନ୍ତି। ବନ ଭାଇନାଙ୍କ ଘର, କ୍ୟାପିଟାଲ ମଝିରେ, ପୁଣି ସେକ୍ରେଟେରୀଏଟ୍ ପାଖରେ ହୋଇ ଥିବା ଯୋଗୁଁ, ବହୁ ସମୟରେ ଆମ ଗାଁ ଏବଂ ପାଖ ଗାଁରୁ ବନ୍ଧୁ ବାନ୍ଧବ ଭୁବନେଶ୍ୱର ବୁଲି ଆସିଲା ବେଳେ ଆସିଥାନ୍ତି। ଦିନେ, ଦୁଇଦିନ ରୁହନ୍ତି। ଛୋଟ, ଦୁଇ ବଖୁରିଆ ଘର ହେଲେ ବି, ଆମେ ତା'ରି ଭିତରେ ଆଡ୍‌ଜଷ୍ଟ କରି ନେଉ। ବନ୍ଧୁ ବାନ୍ଧବମାନଙ୍କ ପାଇଁ ରୋଷଇ ବାସ ହୁଏ। ଦିନେ ଦୁଇଦିନ ଖିଆପିଆ ଚାଲେ। ବେଳେବେଳେ ସେମାନଙ୍କ ମଧ୍ୟରୁ କିଏ କିଏ ଚାଉଳ, ନଡ଼ିଆ, ପନିପରିବା ମଧ୍ୟ ଧରି କରି ଆସିଥାନ୍ତି। ବନ ଭାଇନାଙ୍କ ପିଲାମାନେ ଗାଁରେ ଅଧିକାଂଶ ସମୟରେ ରହୁଥିବା ହେତୁ ତାଙ୍କ ଘରଟି ଆମ ଆଖପାଖ ଗାଁର ଲୋକମାନଙ୍କ ପାଇଁ ଏବଂ ଆମର ଜଣାଶୁଣା ବନ୍ଧୁବାନ୍ଧବମାନଙ୍କ ପାଇଁ ଏକ ପ୍ରକାର ପାନ୍ଥଶାଳା ହୋଇଥାଏ।

ବୋଧେ ଉଣେଇଶ ଶହ ଷାଠିଏ ମସିହା ଫଗୁଣମାସ। ଭୁବନେଶ୍ୱରରେ ସେତେବେଳେ ଗରମ ନଥାଏ। ଖରାଦିନେ ଯେତେ ଗରମ ହେଲେ ବି ଦିନ ତିନିଟା ପରେ ସୁନ୍ଦର ଶୀତଳ ପବନ ଭୁବନେଶ୍ୱରରେ ବହୁଥିଲା। ସନ୍ଧ୍ୟାବେଳକୁ ବେଶ ଥଣ୍ଡା ଲାଗେ। ଫଗୁଣ ମାସରେ, ବନ ଭାଇନାଙ୍କ ବଡ଼ ଭାଇନାଙ୍କ ବନ୍ଧୁ, ତାଙ୍କର ଦୁଇ ଝିଅଙ୍କୁ ସାଙ୍ଗରେ ଧରି ଭୁବନେଶ୍ୱର ଆସିଥାନ୍ତି। ସେମାନେ ସମସ୍ତେ ରହିଲେ। ଦୁଇ ବଖରା ଘର। ମେନ୍ ରୁମ୍‌ରେ ସେମାନେ ସମସ୍ତେ ରହିଲେ। ପାଖ ବଖରାରେ ମୁଁ ଏବଂ ବନ ଭାଇନା ରହିଲୁ। ଦିନେ, ଦୁଇ ଦିନର କଥା। ସେମାନେ ଆସିଥିଲେ ତାଙ୍କ ବଡ଼ ଝିଅର ବାହାଘର ଠିକ୍ କରିବା ପାଇଁ। ବାହାଘର ଜୁଟାଇ, ବାହା କରାଇ ଦେବାରେ ବନ ଭାଇନାଙ୍କ ବଡ଼ଭାଇ ସେ ଭାରି ଖୁସି। ବିଜୁଳି ବିଭାଗରେ ଖଣ୍ଡେ ଛୋଟ ସରକାରୀ ଚାକିରି କରିଥିଲେ ମଧ୍ୟ ବଡ଼ ଯନ୍ତ୍ରୀଙ୍କଠାରୁ ଆରମ୍ଭ କରି କିରାଣୀମାନେ ସମସ୍ତେ ତାଙ୍କୁ ମାନନ୍ତି। ସମସ୍ତଙ୍କର ପୂଜାଠାରୁ ଆରମ୍ଭ କରି ବାହାଘର ପର୍ଯ୍ୟନ୍ତ ଭାଇନା କରିଥାନ୍ତି। ସେ ସମସ୍ତଙ୍କର କାମ ଖୁସିରେ କରନ୍ତି, ପଇସା ପତ୍ରରେ ସମ୍ବନ୍ଧ ନ ଥାଏ। ଏମିତି କି ମୁଁ ବି.ଏ. ଫାଷ୍ଟ ଇୟରରେ ପଢ଼ିଲା ବେଳେ, ସେ ମୋର ଗୋଟେ ବାହାଘର ପ୍ରସ୍ତାବ

ଜୁଟାଇ ଦେଲେ। ସେ, ଏକଥା କାହାକୁ କହି ନ ଥାନ୍ତି। ମୋର ସହପାଠୀ ଏବଂ ଆମ ଗାଁର ପୀତବାସ ଜେନା ସାଙ୍ଗରେ କଥାବାର୍ତ୍ତା ହୋଇ ଝିଅ ଦେଖିବାକୁ ମୋତେ ନେଇ ଯାଇଥିଲେ। ପୁରୁଣା ଭୁବନେଶ୍ୱରର ଜଣେ ପୂଜାପଣ୍ଡା ଘରେ ଏ ପ୍ରସ୍ତାବ ପଡ଼ିଥିଲା ସେ ଏକଥା ମୋତେ କହି ନ ଥାନ୍ତି। ପୁରୁଣା ଭୁବନେଶ୍ୱର ବୁଲିଯିବା ନାଁରେ ଆମେ ଟାଉନ୍ ବସ୍‌ରେ ବସି ମନ୍ଦିର ପାଖେ ଓହ୍ଲେଇ ଯାଇଥିଲୁ ସେଇ ପୂଜା ପଣ୍ଡାଙ୍କ ଘରକୁ। ସେ ପୁରୁଣା କାଳିଆ ଥିଲାବାଲା ଘର। ଦି-ମହଲା ପକ୍କା। ପୀତବାସ ଆଉ ମୋତେ ଘରର ଗୋଟେ ଛାତ ଉପରେ ବସାଇ ଦେଇ, ସେ ତଳକୁ ଚାଲିଗଲେ। ଅଳ୍ପ ସମୟ ପରେ, ଆମେ ବସିଥିବା ପାଖ ଛାତରେ କିଛି ନ ଜାଣିଲା ପରି ଗୋଟିଏ ଷୋଳ ସତରବର୍ଷର ଝିଅ ଏବଂ ତାଙ୍କ ମା କଥାବାର୍ତ୍ତା ହେଲେ। ଆଗରୁ କହିଥିବା କଥା ଅନୁସାରେ, ପୀତବାସ ମୋତେ ସେ ଝିଅ ଆଡ଼େ ଚାହିଁବାକୁ କହିଲା। ମୁଁ ଦେଖିଲି ଭାଇନା ଯେତେ ଦୂର ପାରନ୍ତି ସେଇ ଝିଅକୁ ମୋତେ ଦେଖେଇବାକୁ ଚାହୁଁଥାନ୍ତି। ମୋ ପରି ଝିଅଟି ମଧ୍ୟ କିଛି ଜାଣି ନ ଥିଲା। ଏଣେ ଆମେ ବସିଥିବା ଛାତ ଉପରକୁ ବଡ଼ ବଡ଼ ରସଗୋଲା ଦୁଇଟା ପ୍ଲେଟରେ ଆସିଲାଣି। ପୀତବାସ ଆଉ ସେ ପଟକୁ ନ ଦେଖି ଦୁଇଟା ଯାକ ରସଗୋଲା ପାଟିରେ ପକାଇ ସାରି, ଗ୍ଲାସେ ପାଣି ପିଇ ବସିଥାଏ। ମୁଁ ଗୋଟେ ଖାଇ, ଆଉ ଗୋଟେ ଖାଇବି କି ନାହିଁ ଭାବିଲା ବେଳକୁ ଭାଇନା, ସେପଟ ଛାତରୁ ଆସି ଏପଟେ ପହଞ୍ଚିଗଲେ। ସାଙ୍ଗେ ସାଙ୍ଗେ ପୀତବାସକୁ ଆଉ ଦୁଇଟା ରସଗୋଲା ଖାଇବା ପାଇଁ କହି, ପୂଜା ପଣ୍ଡା ଘର ଲୋକଙ୍କୁ ରସଗୋଲା ପାଇଁ ବରାଦ କରିଦେଲେ। ଛାତ ଉପରେ ରସଗୋଲା ଖାଇବା ପର୍ବ ସରିଲା ପରେ, ଭାଇନା ମୋ ଉଦ୍ଦେଶ୍ୟରେ ଆରମ୍ଭ କଲେ, ବୁଝିଲୁ ପଇସା ବାଲା ଘର- ଆରେ, ପୁରୁଣା କାଳିଆ ଟଙ୍କା ଯାଙ୍କ ଘର ତଳେ ପୋତା ହୋଇ ରହିଛି। ଦେଖୁନୁ- କେତେ ଧାଡ଼ି ପକ୍କା ଘର। ତୋର ଏମ୍.ଏ ପଢ଼ିବା ପର୍ଯ୍ୟନ୍ତ ସବୁ ଖର୍ଚ୍ଚ ଦେବେ। ଝିଅଟ ଦେଖିଲୁ କ'ଣ ସୁନ୍ଦର ନୁହେଁ- ଆରେ ସୁନ୍ଦର କ'ଣ, ସୁନ୍ଦରକୁ କ'ଣ ଗୋଳେଇ ଘାଣ୍ଟି ପିଇବୁ। ମୁଁ ତାଙ୍କ କଥା ବୁଝିଲା ବେଳକୁ ସେ ସବୁ କହି ସାରିଲେଣି। ସେଠି ବା ଆଉ ମୁଁ କ'ଣ କହିଥାନ୍ତି। ସେତେବେଳକୁ ତଳେ ଝିଅର ବାପା, ମା ଛୋଟ ଭଉଣୀ ଠିଆ ହୋଇଥାନ୍ତି। କଥାଟା ପକ୍କା ହୋଇଗଲେ, ଯେତେ ଶୀଘ୍ର ପାରେ ବାହାଘର ହେବ, ନ ହେଲେ ନିର୍ବନ୍ଧ କରି ରଖାଯିବ। ମୁଁ କିଛି ନ କହିଲାରୁ- ଭାଇନା କହିଲେ "କିଛି ଚିନ୍ତା କରିବାର ନାହିଁ, ନନା-ବୋଉଙ୍କ କଥା ଭାବୁଛୁ ତ? ସେକଥା ମୋ ଉପରେ ନିର୍ଭର କରେ। ଦେଖୁଛୁ ତ ଘର ଦ୍ୱାର। ଆରେ ତୋ ପାଇଁ ଅଲଗା କୋଠା କରିଦେବେ। ଉଡ଼ାଜାହାଜ

ପଡ଼ିଆ ପାଖେ, ତାଙ୍କର ବି ମାଣ ଜମି ପଡ଼ିଛି।" ସେଦିନ ଫେରିଲୁ। ମୁଁ ଆଉ ତାଙ୍କୁ କିଛି କହି ନ ଥାଏ। ବସାରେ ପହଞ୍ଚିଲା ପରେ ପୀତବାସ କହିଲା "ଶଳା ଠିକ୍ ଅଛି- ବୁଢ଼ା ପ୍ରସ୍ତାବ ପକାଉ- ଆମକୁ ତ ରସଗୋଲା ଖାଇବାକୁ ମିଳିବ।"

ସେଇ ଭାଇନା ତାଙ୍କ ବନ୍ଧୁଙ୍କ ବଡ଼ ଝିଅ ପାଇଁ ବିବାହ ପ୍ରସ୍ତାବ ପକାଇଥାନ୍ତି। ପିଲା ପୁରୁଣାକାଳିଆ ଜମିଦାର ଘରର। ବୟସ ଟିକେ ବେଶି, ମାତ୍ର ଚଳିଯିବ। ସେତେବେଳକୁ ତାଙ୍କ ବନ୍ଧୁଙ୍କ ବଡ଼ ଝିଅର ବୟସ ଅଠର, ଉଣେଇଶି। ଦେଖିବାକୁ ଖୁବ୍ ସୁନ୍ଦର- ଯେମିତି ଗୋଟିଏ ଚାଉଳରେ ଗଢ଼ା। ତାଙ୍କ ସାନ ଝିଅ ନାଁ ବାସନ୍ତୀ- ବୟସ ସେତେବେଳକୁ ଏଗାର କି ବାର। ଗାଁ ସ୍କୁଲରେ ପଞ୍ଚମ କି ଷଷ୍ଠ ଶ୍ରେଣୀରେ ପଢୁଥାଏ। ବଡ଼ ଭଉଣୀ ପରି ସେ ବି ସେମିତି ସୁନ୍ଦର। ପିନ୍ଧୁଥାଏ ଛୋଟ ଫ୍ରକ୍, ପ୍ୟାଣ୍ଟ। ବାହାଘର ଦିନ ଠିକ୍ ପାଇଁ, ସମସ୍ତେ ଆସିଥାନ୍ତି। ଦିନ, ଦୁଇଦିନ ଦରକାର। ତେଣୁ ସେମାନେ ସମସ୍ତେ ବନ ଭାଇନାଙ୍କ ଘରେ ରହୁଥାନ୍ତି। ସେମାନେ ରହୁଥିଲା ବେଳେ ମୋତେ ବେଳେବେଳେ ତାଙ୍କ ପାଇଁ ଛୋଟ ବଡ଼ କାମ ଟିକିଏ କରି ଦେବାକୁ ପଡୁଥାଏ। ଦିନେ ବାସନ୍ତୀଙ୍କ ବାପା କହିଲେ, ତାଙ୍କ ଦୁଇ ଭଉଣୀଙ୍କର ଗୋଟେ ଫଟୋ ଉଠାଇ ଆଣିବା ପାଇଁ। ସେତେବେଳେ ଭୁବନେଶ୍ୱରରେ ଫଟୋ ଦୋକାନ ବୋଇଲେ ଜଣାଶୁଣା ଗୋଟେ ଫଟୋ ଦୋକାନ। ରାଜମହଲ ହୋଟେଲ, ସେଇ ବର୍ଷ ନୂଆ ହୋଇ ଖୋଲିଥାଏ ଏବଂ ତା'ର ଚାରିପଟେ ଦୋକାନ ଘର ଭଡ଼ାରେ ଲଗାଯାଇଥାଏ। ସେଇ ଦୋକାନ ଘରରୁ ଗୋଟେ "ଘୋଷଦାଦା" ନେଇ ଫଟୋ ଦୋକାନ କରୁଥାନ୍ତି। ସେତେବେଳେ ସେଇ ଫଟୋ ଦୋକାନକୁ ସମସ୍ତେ ଫଟୋ ଉଠାଇବାକୁ ଯାଉଥିଲେ। ମୋର ସେଇ ଫଟୋ ଦୋକାନ ସଙ୍ଗେ ଭଲ ଜଣାଶୁଣା ଥାଏ। କାରଣ ମୋର ଗୋଟେ କୋଡାକ୍ କ୍ୟାମେରା ଥିଲା। ବେଳେ ବେଳେ ସେଇ କ୍ୟାମେରାରେ ଫଟୋ ଉଠାଇ ତାଙ୍କର ପାଖରେ ପ୍ରିଣ୍ଟ କରୁଥିଲି। ୧୨୦-କୋଡ଼ାକ ରିଲ୍ ଗୋଟାକୁ ୧.୫୦ ପଇସା ଏବଂ ପ୍ରିଣ୍ଟ ଗୋଟାକୁ ୨୫ ପଇସା ଥିଲା। ଦୁଇ ଭଉଣୀଙ୍କ ଫଟୋ ଉଠାଇବା ପାଇଁ ଗୋଟିଏ ରିକ୍ସାରେ ବସି ସେଇ ଘୋଷଦା ଫଟୋ ଦୋକାନକୁ ଗଲୁ ଏବଂ ଫଟୋ ଉଠାଇ ଫେରିଲୁ।

ଦୁଇ ଦିନ ରହିଲା ମଧ୍ୟରେ ବାସନ୍ତୀ ସଙ୍ଗେ ମୋର ସେତିକି ଦେଖା। ଦୁଇ ଦିନ ମଧ୍ୟରେ ତା' ବଡ଼ ଭଉଣୀର ବାହାଘର ଠିକ୍ ହୋଇଗଲା। ବାହାଘର ଦିନ ମଧ୍ୟ ଠିକ୍ ହୋଇଗଲା। ସେମାନେ ସବୁ ଘରକୁ ବାହାରିଲେ। ଯିବା ଦିନ ଭାଇନା ସେମାନଙ୍କୁ ବସ୍‌ଷ୍ଟାଣ୍ଡରେ ଛାଡ଼ିବାକୁ ଗଲାବେଳେ ତାଙ୍କ ବନ୍ଧୁଙ୍କ ଉଦ୍ଦେଶ୍ୟରେ

କହିଲେ- "ବୁଝିଲ, ବଡ଼ ଝିଅ ପାଇଁ ସିନା ଏତେ କଷ୍ଟ କଲ- ସାନ, ପାଇଁ ଚିନ୍ତା ନାହିଁ। ଏଇ ଟୋକା ସାଙ୍ଗରେ ସାନକୁ ବାହା କରିବା।" ମୁଁ ସେତେବେଳକୁ ଗେଟ୍ ପାଖରେ ସେମାନଙ୍କୁ ରିକ୍ସାରେ ବସାଇବା ପାଇଁ ଯାଇଥାଏ। ଆଗରେ ବାସନ୍ତୀ। କଥାଟା ସମସ୍ତଙ୍କ କାନକୁ ଶୁଭିଲା। ବାସନ୍ତୀ ମଧ୍ୟ ଶୁଣି ପାରି, ସେତେବେଳକୁ ଲାଜେଇ ଯାଇଥାଏ। ରିକ୍ସାରେ ବସିଲା ବେଳେ ତାଙ୍କ ବନ୍ଧୁ କହିଲେ ହଉ - ପ୍ରସ୍ତାବ ରହିଲା, ସମୟ ତ ଅଛି, ଯାହା ଭଗବାନଙ୍କ ବରାଦ ଥିବ। ସେତକ କହି ସେ ରିକ୍ସାକୁ ଉଠିଲେ। ମୁଁ ମୁଣ୍ଡ ନୁଆଁଇ ନମସ୍କାର କରି, ମୁଣ୍ଡ ଉଠାଇଲା ବେଳକୁ ରିକ୍ସା ଚାଲିବାକୁ ଆରମ୍ଭ କରିଥାଏ। ସେତିକି ବେଳେ ବାସନ୍ତୀ ଆଡ଼େ ମୁଁ ଚାହିଁଥିଲି। ସେ ମୋ ଆଡ଼େ ଚାହିଁବାକୁ ଚେଷ୍ଟା କରିଥିଲା କି ନାହିଁ ମାତ୍ର କିଛି କ୍ଷଣ ପାଇଁ ଦୁହେଁ ଦୁହିଁଙ୍କୁ ଚାହୁଁଥିଲୁ। ରିକ୍ସା ବସ୍‌ଷ୍ଟାଣ୍ଡ ଆଡ଼େ ଚାଲିଗଲା- ଗେଟ୍ ମୁହଁରୁ ମୁଁ ଘରକୁ ଫେରି ଆସିଲି। କିଛି ସମୟ ପାଇଁ ମନଟା କିମିତି କିମିତି ଲାଗିଲା। ଭାଇନାଙ୍କ କଥାଟା ମନେ ପଡୁଥାଏ। ଦିନ କେତେଟା ପରେ, ସେମାନଙ୍କ କଥା ଆଉ ମନରେ ନ ଥିଲା।

ବାସନ୍ତୀ ବଡ଼ ଭଉଣୀର ବାହାଘର ଭୁବନେଶ୍ୱରରେ ହେଲା। ସେତେବେଳକୁ ସେମାନେ ସମସ୍ତେ ଆସିଲେ ମାତ୍ର ବନ ଭାଇନାଙ୍କ ଘରେ ନ ରହି ପୁରୁଣା ଭୁବନେଶ୍ୱରର ଧର୍ମଶାଳାରେ ରହିଲେ। ବାହାଘର ପାଇଁ ଧର୍ମଶାଳା ସବୁଯାକ ଘର ନିଆଯାଇଥାଏ। ସେଇଠି ଖିଆପିଆ ଏବଂ ବାହାଘର ବନ୍ଦୋବସ୍ତ ହୋଇଥିଲା। ନିମନ୍ତ୍ରଣ ପାଇଁ ବାହାଘର ଦିନ ଭୋଜି ଖାଇବାକୁ ଯାଇଥିଲି। ସେଇଠି ପୁଣି କିଛି ସମୟ ପାଇଁ ବାସନ୍ତୀ ସଙ୍ଗେ ଦେଖା ହେଲା। କଥାବାର୍ତ୍ତା ହେବର ସେମିତି କିଛି ଆବଶ୍ୟକତା ପଡ଼ିନଥିଲା, ମାତ୍ର ବାସନ୍ତୀକୁ ବାରମ୍ବାର ଦେଖିବାକୁ ତା' ସଙ୍ଗେ ପଦେ କଥା ହେବାକୁ ମନଟା ଛଟପଟ ହେଉଥିଲା। ପାଣି ପିଇବା, ପାଣି ଆଣିଦେବା ବାହାନାରେ କେତେଥର, ମାଇପେମାନେ ବସିଥିବା ରୁମ ଆଡ଼େ ଯାଇଛି, ବାସନ୍ତୀ ଆଡ଼େ ଚାହିଁଛି। ଥରେ ଅଧେ ମୋତେ ଦେଖି ବାସନ୍ତୀ ବାହାରକୁ ଆସିଛି କିନ୍ତୁ କଥା ହେବାର ସୁଯୋଗ ନ ଥିଲା କିମ୍ବା ସେପରି କିଛି ବାହାନା ଖୋଜି ମିଳି ନ ଥିଲା। ବାହାଘର ଭୋଜି ଖାଇ ମୁଁ ଫେରି ଆସିଲି। ସେଦିନ ରାତିରେ ଝିଅ ବାହାଘର ସରିଲା ପରେ, ଝିଅ ବିଦା କରି ସେମାନେ ସମସ୍ତେ ଗାଁକୁ ଫେରିଲେ।

ଆଉ ବାସନ୍ତୀ ସଙ୍ଗେ ମୋର ଦେଖା ହୋଇ ନ ଥିଲା। ଛୁଟିରେ ଗାଁକୁ ଗଲାବେଳେ ତାଙ୍କ ଗାଁ କଥା ପଡ଼ିଲେ କିମ୍ବା ତାଙ୍କ ଗାଁରୁ ଆମ ଗାଁକୁ ବନ୍ଧୁବାନ୍ଧବ

ଗଲା ଅଇଲା ବେଳେ, ବାସନ୍ତୀ କଥା, କଥା ପ୍ରସଙ୍ଗରେ ପଚାରେ- ବୁଝେ। ଶୁଣେ, ସେ ଗାଁରୁ ଯାଇ ନିମାପଡ଼ା ଟାଉନରେ ଘର ଭଡ଼ା ନେଇ ମାଟ୍ରିକ୍ ପଢୁଛି। ସେ ଯେଉଁ ବର୍ଷ ମାଟ୍ରିକ ପାଶ୍ କଲା, ସେ ବର୍ଷ ସେଇ ସ୍କୁଲର ପରୀକ୍ଷା ଫଳ ଖୋଜି ବାସନ୍ତୀ ପାଶ୍ କରିବା ଖବର ଜାଣି ଅତ୍ୟନ୍ତ ଆନନ୍ଦିତ ହୋଇଥିଲି। ସେ କଲେଜରେ ପଢ଼ିଲା, ଏକଥା ଶୁଣି ମୁଁ ବହୁତ ଖୁସି ହେଲି। ମନେ ମନେ ଭାବୁଥିଲି, କିମିତି ଥରେ ଦେଖା ହୁଅନ୍ତା। ଏଥି ମଧ୍ୟରେ କେତେବର୍ଷ ବିତିଗଲାଣି। ସେଦିନର ବାସନ୍ତୀ ଆଜିର ବାସନ୍ତୀ ଭିତରେ ବହୁତ ଫରକ ଆସି ଯିବଣି- ମାତ୍ର ଦେଖି ପାରି ନ ଥିଲି। ସମୟ ସ୍ରୋତ କାହାକୁ ଅପେକ୍ଷା କରେନି। ମୁଁ ବି.ଜେ.ବି କଲେଜରୁ ବି.ଏ. ପାଶ୍ କରି, ବାଣୀବିହାରରେ ଏମ୍.ଏ ପାଶ୍ କଲି। ଏଇ ସମୟ ଭିତରେ କଲେଜ ଜୀବନରେ ବହୁତ ସହପାଠିନୀଙ୍କ ସଙ୍ଗେ ମିଶିଛି। କେବଳ ଯେ ମିଶିଛି ଏକଥା ନୁହଁ- କେତେଜଣଙ୍କ ସାଙ୍ଗରେ ଯୁବକ ସୁଲଭ ପ୍ରେମ ଆରମ୍ଭ କରିଥିଲି। ପ୍ରେମପତ୍ର ଲେଖିଥିଲି। କିନ୍ତୁ ଏ ସମସ୍ତ ଭିତରେ ନିରୋଳା ସମୟରେ ବସି ଯେତେବେଳେ ଭବିଷ୍ୟତ ଜୀବନ ସାଥି କଥା ଭାବୁଥିଲି ସେତେବେଳେ ସେଇ ଏଗାର ବାର ବର୍ଷର ଝିଅ ମୁହଁଟି ସବୁବେଳେ ମୋ ମାନସପଟର ଉଙ୍କିମାରେ। ବନ ଭାଇନା ଘରୁ ରିକ୍ସାରେ ବସିଗଲା ବେଳେ ତା'ର ସେଇ ସନ୍ଦିଗ୍ଧ ଚାହାଣୀ ଭିତରେ, ମୁଁ ମୋ ମନ ଭିତରେ ତାକୁ ନେଇ କେତେ ସୁନ୍ଦର ସ୍ୱପ୍ନ ଦେଖିଥିଲି। ଅନ୍ୟ ବାନ୍ଧବୀମାନେ ଯେତେ ନିକଟକୁ ଆସିଥିଲେ ମଧ୍ୟ ମନରେ ସେଇ ଏଗାର ବର୍ଷର ଝିଅଟି ସବୁବେଳେ ନିକଟତର ହୋଇ ଆସିଥିଲା।

ଏମ୍.ଏ.ପାଶ୍ କରି ମୁଁ ଚାକିରି କଲି। ସବ୍‌ଡେ଼ପୁଟୀ କଲେକ୍ଟର ଭାବେ ଜଏନ୍ କଲି। ମୋ ପାଇଁ ବାହାଘର୍ ପ୍ରସ୍ତାବ ଆସିଲା। ବୋଉ ଅଡ଼ି ବସିଲା - ଯେତେ ଶୀଘ୍ର ବାହାଘର ହୋଇଯାଉ। ଏଣେ ଯେଉଁ କଲେଜ ଜୀବନର ବାନ୍ଧବୀମାନେ - ମୋତେ ବିବାହ ନ କଲେ ସେମାନେ ମହାନଦୀ ପୋଲ ଉପରୁ କିମ୍ବା ବାଣୀବିହାର ଲେଡ଼ିଜ୍ ହଷ୍ଟେଲ ପାଖ ପାଣି ଟାଙ୍କି ଉପରୁ ନଦୀ ଗର୍ଭକୁ କିମ୍ବା ପାଣି ଟାଙ୍କି ତଳକୁ ଡେଇଁ ଆତ୍ମହତ୍ୟା କରିବେ ବୋଲି ବହୁବାର କହି, ଆଖିରୁ ଧାରଧାର ଲୁହ ଗଡ଼ାଇ ଥିଲେ, ସେମାନେ ମୋତେ ଛାଡ଼ି ଅନ୍ୟ ହାତ ଧରି ଚାଲିଗଲେ। ଗଲାବେଳେ ବି ବାହାଘର ନିମନ୍ତ୍ରଣ କାର୍ଡ଼ ଖଣ୍ଡେ ପଠାଇ ନ ଥିଲେ। ଏଥି ମଧ୍ୟରେ ବାସନ୍ତୀର ବାପା ଅକାଳ ମୃତ୍ୟୁର ସମ୍ମୁଖୀନ ହେଲେ। ବାସନ୍ତୀର କଲେଜ ପଢ଼ା ବନ୍ଦ ହେଲା। ଏ ଖବର ମୋ ପାଖରେ ପହଞ୍ଚିଥିଲା।

ମୋ ବାହାଘର ପାଇଁ ମୋ ବୋଉ ଯେତେବେଳେ ପ୍ରସ୍ତାବ ଖୋଜି ବୁଲିଲା, ମୁଁ କୌଣସି ପ୍ରକାର ତା' କାନରେ ବାସନ୍ତୀ କଥାଟା ପକାଇ ଦେଲି।

ବଙ୍କେଇ କରି ମଧ୍ୟ କହିଲି ଯେ, ସେଠି ବାହାଘର ହେଲେ ମୋର ଝିଅ ଦେଖି ଯିବା ଦରକାର ନାହିଁ। ବୋଉ, କଥାଟା ଶୁଣିଲା ପରେ ପ୍ରସ୍ତାବଟା ବାସନ୍ତୀର ପିଉସାଙ୍କ ହାତରେ ପଠାଇଥିଲା। ମାତ୍ର ପ୍ରସ୍ତାବ ଠିକ୍ ବାଟରେ ଗଲା ନାହିଁ। ଯେ ପ୍ରସ୍ତାବ ପାଇଁ ରାଜି ଥିଲେ, ସେ ନ ଥିବା ଯୋଗୁଁ ପ୍ରସ୍ତାବର ଗୁରୁତ୍ୱ ରହିଲା ନାହିଁ। ବାପାଙ୍କ ମୃତ୍ୟୁ ମାତ୍ର ବର୍ଷେ ପାଖାପାଖି ହୋଇଥିବା ହେତୁ, ବାସନ୍ତୀ ଘରେ ମଧ୍ୟ ବିବାହ ପାଇଁ ମାନସିକ ଭାବେ ପ୍ରସ୍ତୁତ ନ ଥିଲେ, କିମ୍ବା ପ୍ରସ୍ତାବ ତାଙ୍କ ମା'ଙ୍କ ପାଖରେ ଠିକ୍ ଭାବରେ ଉପସ୍ଥାପିତ ହୋଇ ନ ଥିଲା। ବାସନ୍ତୀ ସଙ୍ଗେ ବିବାହ ପ୍ରସ୍ତାବ କାଟ୍ ଖାଇଲା ପରେ ବୋଉ ଯେଉଁଠି ଝିଅ ଠିକ୍ କଲା ମୁଁ ସେଠି ବାହାହେଲି।

ଏଥି ମଧ୍ୟରେ ୩୦ ବର୍ଷ ଅତିବାହିତ ହୋଇ ଯାଇଛି। ଅକ୍ଟୋବର ମାସ ୨୯ ତାରିଖ (୧୯୯୯) ଦିନ ଓଡ଼ିଶାର ପୂର୍ବ ଉପକୂଳ ଅଞ୍ଚଳରେ ମହାପ୍ରଳୟଙ୍କରୀ ବାତ୍ୟାରେ ହଜାର ହଜାର ବ୍ୟକ୍ତି ସମୁଦ୍ର ଗର୍ଭକୁ ଭାସିଗଲେ। ହଜାର ହଜାର ଗାଁ ମାଟିରେ ମିଶିଗଲା। କେତେ ଗାଁ ସଂପୂର୍ଣ୍ଣ ଭାବେ ଲୀନ ହୋଇଗଲା। ଲକ୍ଷ ଲକ୍ଷ ଗୃହପାଳିତ ପଶୁ ମୃତ୍ୟୁ ବରଣ କଲେ। ଉପକୂଳ ଜିଲ୍ଲା ଜଗତସିଂହପୁର, କେନ୍ଦ୍ରାପଡ଼ା, କଟକ ଏବଂ ପୁରୀ ଜିଲ୍ଲାର କେତେ ଅଞ୍ଚଳ ଧ୍ୱଂସ ସ୍ତୁପ ପରି ଦେଖାଗଲା। ପୁରୁଣା ଗଛମାନ ଟଳି ପଡ଼ିଲେ। ବାତ୍ୟା ପରେ ୩୧ ଅକ୍ଟୋବର ଦିନ, ମୁଁ ଯାଇଥାଏ ଜଗତସିଂହପୁର ଜିଲ୍ଲାକୁ । ବାତ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ଉଦ୍ଧାର ଏବଂ ସାହାଯ୍ୟ କାର୍ଯ୍ୟରେ ଜିଲ୍ଲା ପ୍ରଶାସନକୁ ସାହାଯ୍ୟ କରିବା ପାଇଁ କଟକଠାରୁ ଜଗତସିଂହପୁର ଜିଲ୍ଲା ସଦର ମହକୁମାର ପହଞ୍ଚିବାକୁ ତିନି ଦିନ ଲାଗିଗଲା। ସଦର ମହକୁମାରେ ପହଞ୍ଚିଲା ପରେ ଯାଇଥିଲି ଏରସମା, ବାଲିକୁଦା ଅଞ୍ଚଳକୁ। ସମଗ୍ର ଜିଲ୍ଲାର ଲୋକମାନେ ତିନି ରୁ ଚାରି ଦିନ ଧରି ଉପବାସ। କାହା ଘରେ ଚୁଲି ଜଳୁ ନ ଥାଏ। ବିଜୁଳି ଆଲୁଅ କଥା ଛାଡ଼ କିରୋସିନି ଟୋପାଏ ମିଳୁ ନ ଥାଏ ଲଣ୍ଠନ କିମ୍ବା ଡିବିରି ଖଣ୍ଡେ ଲଗାଇ ସନ୍ଧ୍ୟା ପରେ ବସିବାକୁ। ସନ୍ଧ୍ୟା ପରେ ସାରା ଜିଲ୍ଲା ଫେରି ଯାଉଥିଲା ସେଇ ଆଦିମ ଯୁଗକୁ, ମଣିଷ, କିମ୍ବା ପଶୁଙ୍କର ଶବ୍ଦ ଟିକିଏ ଶୁଭୁ ନ ଥାଏ। ଚାରିଆଡ଼େ ମହାପ୍ରଳୟର କୋକୁଆ ଭୟ। ସତେ ଯେପରି ଶତାବ୍ଦୀ ଶେଷ ଭାଗରେ, ମହାକାଳ, ମହାପ୍ରଳୟ ସୃଷ୍ଟିକରି ସୃଷ୍ଟି ଶେଷ କରିବାକୁ ଆଗେଇ ଆସିଛି।

ଏରସମା ରାସ୍ତା ଉପରେ ମଣିଷର ଶବ, ଗୋରୁ, ଗାଈଙ୍କ ଶବ ରାସ୍ତାକଡ଼ର ଗଛ ଡ଼ାଳ ଭାଙ୍ଗି ପଡ଼ି କେତେ ସ୍ଥାନରେ ତାଙ୍କୁ ତାଙ୍କର ଭଙ୍ଗା ଡାଳ ତଳେ ସତେ

ଯେପରି ଆଶ୍ରୟ ଦେଇଥାନ୍ତି। ସାରା ପରିବେଶ ନିସ୍ତେଜ, ମ୍ରିୟମାଣ। ଦୁଇଦିନ, ତିନିରାତି ରାସ୍ତା ଉପରେ ରାସ୍ତା ସଫା କରିବାରେ କଟାଇଲା ପରେ, ଫେରିଥିଲି ଜଗତସିଂହପୁର ସଦର ମହାକୁମାକୁ। ସଦର ମହକୁମାର ଅତିଥିଭବନ କୋଠରିରେ ଆଣ୍ଠୁଏ ପାଣି। ରହିବାକୁ ଜାଗା ନ ଥାଏ। ସେଇ ଭଙ୍ଗା କୋଠରିର ଆଣ୍ଠୁଏ ପାଣି ଉପରେ ପଡ଼ିଥିବା ଲଣ୍ଡା ଖଟଟି ଥାଏ ମୋର ସେଦିନ ରାତ୍ରୀର ଆଶ୍ରୟସ୍ଥଳ। ତିନି ରାତି ଜିପ୍ ଭିତରେ କଟାଇଥିଲି। ସାଙ୍ଗରେ ନେଇଥିବା ଚୁଡ଼ା, କିଛି ବିସ୍କୁଟ ଥିଲା ତିନି ରାତିର ଆହାର। ନେଇଥିବା ପାଣି ସରି ଯାଇଥାଏ। ନଳକୂଅରୁ ପାଣି ସଂଗ୍ରହ କରିଥିବା ପାଣି ମଧ୍ୟ ସଂକ୍ରମିତ ବୋଲି କହୁଥାନ୍ତି। ତେବେ ସେଇ ପାଣିରେ ହାଲୋସିନ୍ ଟାବଲେଟ୍ ପକାଇ ପିଇବାକୁ ସମସ୍ତଙ୍କର ତାଗିଦ୍। ହାଲୋସିନ୍ ଟାବେଲେଟ୍ କେତେଟା ପାଇଁ ଯାଇଥାଏ, ସଦର ଡାକ୍ତରଙ୍କ ଘରକୁ।

ସନ୍ଧ୍ୟା ଆଠଟା ହେଲେ ବି ସହରରେ ଅନ୍ଧକାର ଘୋଟି ଯାଇଥାଏ। ଜିପ୍ ଶବ୍ଦ ଶୁଣି ଡାକ୍ତର ଘର ସାମ୍ନାକୁ ବାହିରିଲେ। ସେ ମଧ୍ୟ ମହା ପ୍ରଳୟଙ୍କରୀ ବାତ୍ୟାର ଅତ୍ୟାଚାରରେ ପ୍ରପୀଡ଼ିତ। ଘରେ ଆଲୁଅ ନ ଥାଏ। ଜିପ୍ ଆଲୁଅ ବାହାର ପଟ ଦରଜାରେ ପଡ଼ିଲା ପରେ, ଡାକ୍ତର ମିଶ୍ର ବାହାରିଲେ, ହାତରେ ଖଣ୍ଡେ ମହମବତୀ ଧରି। ଜିପରୁ ଓହ୍ଲାଇ ମୁଁ ଉଠିଲି ତାଙ୍କ ବାହାର ଘର ପିଣ୍ଡା ଉପରକୁ। ଜିପ୍ ଆଲୁଅ ସେମିତି ଜଳୁଥାଏ। ସେଇ ଆଲୁଅ ଭିତରେ ଦେଖିଲି ଡାକ୍ତରବାବୁଙ୍କ ବାହାର ପଟ ଘରର ପୁରୁଣା ଟିଣ ଛାତ ଉଡ଼ି ଯାଇଛି। ପାଖ ପାଚେରୀ ଉପରେ ଦୁଇଟା ନଡ଼ିଆ ଗଛ, ଗୋଟେ ପୁରୁଣା ଆମ୍ବ ଗଛ ପଡ଼ିଛି। ଘର ସଫା ନାହିଁ। ଜିପ୍‌ର ହେଡ୍‌ଲାଇଟ୍ ଆଲୁଅରେ ଡାକ୍ତରବାବୁଙ୍କୁ ଦେଖିଲି। ପିନ୍ଧିଥାନ୍ତି ଖଣ୍ଡେ ଲୁଙ୍ଗି। ହଠାତ୍ ଅନ୍ଧାର ଭିତରେ ଜଣେ ଆଗନ୍ତୁକ ଭଦ୍ର ବ୍ୟକ୍ତି ତାଙ୍କ ଦାଣ୍ଡ ଦୁଆର ମୁହଁରେ ଠିଆ ହୋଇଥିବା ଦେଖି ସେ ପ୍ରଥମେ ଭାବି ନେଇଥିଲେ ତତ୍କାଳ କେସ୍ ନେଇ କିଏ ଆସିଛି। କିଛି ନା କିଛି ଘଟିଛି, ନ ହେଲେ କିଏ ଏ ଅସମୟରେ ଘରୁ ଜିପ୍ ଧରି ଡାକ୍ତରଙ୍କ ପାଖକୁ ଆସିବ। ମୁହଁରେ ସାମାନ୍ୟ ବିରକ୍ତି ଭାବ।

ବାରଣ୍ଡା ଉପରେ, ମୁଁ ମୋର ନିଜର ପରିଚୟ ଦେଇ କହିଲି, ହାଲୋସିନ୍ ଟାବେଲେଟ୍ ଯଦି ତାଙ୍କ ପାଖରେ ଥାଏ, ତାହେଲେ କେତେଟା ଦେଲେ ଦିନେ ଦୁଇଦିନ ପାଇଁ ଚଳିଯିବ। ଜିପ୍ ଡ୍ରାଇଭର ଜିପ୍‌ର ହେଡ୍ ଲାଇଟଟ୍ ବନ୍ଦ କରିଦେଲା।

ଘର ଭିତରୁ ଆକାଶର ତା'ରା ଦିଶୁଥିବା, ଡାକ୍ତରବାବୁଙ୍କ ପୂତିଗନ୍ଧଯୁକ୍ତ ବୈଠକଖାନାରେ ହାତଭଙ୍ଗା ଚୌକି ଉପରେ ବସିଲା ବେଳେ, ମୁଁ ମନେମନେ

ଭାବୁଥିଲି ଡାକ୍ତରବାବୁଙ୍କୁ କେଉଁଠି ଦେଖିଛି। ଜଳୁଥିବା ମହମବତୀ ଖଣ୍ଡିକୁ ସେଣ୍ଟର ଟେବୁଲ ଉପରେ ରଖିଦେଲା ପରେ ଡାକ୍ତରବାବୁ ଆଉ ଖଣ୍ଡେ ଚେୟାର ଟାଣି ଆଣି ସେଣ୍ଟର ଟେବୁଲକୁ ଲାଗି, କ'ଣ ଭାବିବାକୁ ଲାଗିଲେ। ମୁଁ କିଛି କହିବା ପୂର୍ବରୁ ଡାକ୍ତରବାବୁ ପଚାରିଲେ -"ହାଲୋସିନ୍ ଟାବଲେଟ ଅଛି, ନେଇଯିବେ, କିନ୍ତୁ ଆପଣ କ'ଣ ସେଇ କୃଷ୍ଣ ଚନ୍ଦ୍ର ବାବୁ ଯେ ଆମ ସାଙ୍ଗେ ବି.ଜେ.ବି କଲେଜରେ ପଢୁଥିଲେ। ମୁଁ ସାଇନ୍ସ୍ ପଢୁଥିଲି ଆପଣ ଆର୍ଟସ୍ ପଢୁଥିଲେ। ଆପଣ ସେଇ କୃଷ୍ଣ ଚନ୍ଦ୍ର ବାବୁ ନୁହଁନ୍ତି ତ।" ମୋ ମନ ଭିତରେ ଯେଉଁ ଚିହ୍ନା ଅଚିହ୍ନା କଥାଟା ଗୁଡ଼େଇ ତୁଡ଼େଇ ହେଉଥିଲା, ତାକୁ ପରିଷ୍କାର କରି ଦେବାକୁ ଯାଇ ମୁଁ ପଚାରିଲି, ଆପଣ କ'ଣ ସେଇ ନରହରି ମିଶ୍ର, ଯେ ୬ ନମ୍ବର ୟୁନିଟରୁ ଆସୁଥିଲେ। ପ୍ରଶ୍ନ ଆଉ ଉତ୍ତର ଭିତରେ କଥାଟା ପରିଷ୍କାର ହୋଇଗଲା। ମୋର ପ୍ରଥମ ଅନୁମାନ ସତ୍ୟ ହେଲା- ଡାକ୍ତର ନରହରି ମିଶ୍ର ମୋ ସଙ୍ଗେ ବି.ଜେ.ବି କଲେଜରେ ସାଇନସ୍ ପଢୁଥିଲେ। ପରେ ପରେ ଡାକ୍ତରୀ ପଢ଼ି ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ବୁଲି ଏବେ ଶେଷ ସମୟକୁ ଏଇଠି ପହଞ୍ଚିଛନ୍ତି। ଚାକିରିରୁ ବିଦାୟ ନେବାକୁ ଆଉ ମାତ୍ର ବର୍ଷେ।

ମହମବତୀର ସାମାନ୍ୟ ଆଲୁଅ ଭିତରେ, ସେଇ ଭଙ୍ଗା ଛାତ ତଳେ ଆମେ କେତେ ସମୟ କଥାବାର୍ତ୍ତା ଭିତରେ ଆମ ପରିସ୍ଥିତିକୁ ଭୁଲି ଯାଇଥିଲୁ। ବାହାରେ ଆଉ ଘର ଭିତରେ ଯେ କିଟିମିଟି ଅନ୍ଧାର, ଏକଥା ମଧ କିଛି ସମୟ ପାଇଁ ଭୁଲିଗଲୁ। କଥାବାର୍ତ୍ତା ମଝିରେ ମିଶ୍ରବାବୁ ତାଙ୍କ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ଅନ୍ଧାର ଘର ଭିତରକୁ ଚାହିଁ କହିଲେ ବାସନ୍ତୀ... ଆରେ ଦେଖ, ଏ ଅସମୟରେ ମୋର ଜଣେ ପୁରୁଣା ବନ୍ଧୁ ଆସି ପହଞ୍ଚିଛନ୍ତି ଆମ ଘରେ। ଘର ଭିତରୁ ଆଉ ଖଣ୍ଡେ ମହମବତୀ ହାତରେ ଧରି ଡାକ୍ତରବାବୁଙ୍କ ପତ୍ନୀ ବାସନ୍ତୀ, ସେଇ ଡ୍ରଇଁରୁମକୁ ପଶି ଆସିଲେ। ମହମବତୀଟିକୁ ସେ ପ୍ରାୟ ମୁହଁ ପାଖରେ ଧରିଥାନ୍ତି। ସେଇ ସ୍ୱଚ୍ଛ ଆଲୁଅ ଭିତରେ ତାଙ୍କ ମୁହଁଟି ପରିଷ୍କାର ଦିଶୁଥାଏ। ମୁହଁଟି ଦେଖିଲା ପରେ ମୋ ମନ ଭିତରେ ଏକ ଅଜଣା ଚିନ୍ତା ଧକ୍କା ମାଇଲା ପରି ଲାଗିଲା। ତା'ରି ଭିତରେ ଡାକ୍ତର ମିଶ୍ର କେତେ କଥା କହି ସାରିଲେଣି। ଝିଅ ବାହା ହୋଇ ଆମେରିକାରେ, ପୁଅ ବୋହୂ ଡାକ୍ତର, ରହୁଛନ୍ତି ବାହାରେ, ଏଠି ସେମାନେ ଦୁଇଜଣ। ଆଉ ବର୍ଷକ ପରେ ଫେରିଯିବେ ଭୁବନେଶ୍ୱର। ନୂଆପଲ୍ଲୀ ଏନ୍-ଟୁରେ ଘର କରିଛନ୍ତି। ତଳ ଘର ଭଡ଼ାରେ ଲାଗିଛି। ଉପର ଘର ଏବେ ଖାଲି। ସେଇ ଉପର ମହଲାରେ ସେମାନେ ରହିବେ। ସେ ଏତେ କଥା କହିଗଲେଣି, ମାତ୍ର କିଛି ନ ଶୁଣିଲା ପରି ଲାଗୁଥାଏ। କେତେବେଳେ ହଁ ତ କେତେବେଳେ ନା କହି ମୁଁ ତାଙ୍କ ଚଉକିକୁ

ଲାଗି ଭାବୁଥିଲି – ପଚାରିବି କି ? ଆମ କଥାବାର୍ତ୍ତା ଭିତରେ ତାଙ୍କ ସ୍ତ୍ରୀ କିନ୍ତୁ ଭାଗ ନେଇ ନ ଥିଲେ। ସେ ସେମିତି ଠିଆ ହୋଇଥାନ୍ତି। ମହମବତୀଟିକୁ ପାଖ ଝରକା ପିଣ୍ଡି ଉପରେ ଥୋଇ ଦେବା ଦ୍ୱାରା ଘରଟି ଆଉ ଟିକେ ଆଲୁଅ ହୋଇଗଲା। କଥାବାର୍ତ୍ତା ଭିତରେ ମୁଁ ମଧ୍ୟ ମିସେସ୍ ମିଶ୍ରଙ୍କୁ ତାଙ୍କ ପୁଅ, ବୋହୂଙ୍କ ବିଷୟରେ ପଚାରିବା ସଙ୍ଗେ ସଙ୍ଗେ ଡାକ୍ତର ମିଶ୍ରଙ୍କ ଛାତ୍ର ସମୟରେ ଟି.ଟି. ଖେଳିବାର ଝୁଙ୍କ ବିଷୟରେ କହୁଥିଲି। ଭାବୁଥିଲି, କଥାବାର୍ତ୍ତା ଭିତରେ ମୁଁ ଯାହାଙ୍କ କଥା ଭାବୁଛି, ସେ କି ନୁହେଁ ଜାଣି ପାରିବି। ମାତ୍ର ତାଙ୍କ ମୁହଁରୁ କିଛି ବି ଶୁଣିବାକୁ ମିଳି ନ ଥିଲା। ସେ ଯେମିତି ଆଉ କ'ଣ ଭାବୁଥିଲେ। ଆସ୍ତେ ଆସ୍ତେ ତାଙ୍କ ମୁହଁ ଉପରେ ଗମ୍ଭୀରତା ପରିଲକ୍ଷିତ ହେଲା। ତା'ରି ଭିତରେ ମୁଁ ଡାକ୍ତର ମିଶ୍ରଙ୍କୁ ପଚାରିଲି "ଡାକ୍ତର ହେଲ, କାଇଁ ତୁମ ବାହାଘରକୁ ତ ଡାକିଲନି କେଉଁଠି ବାହା ହେଲ ମିସେସ ମିଶ୍ରଙ୍କ ଘର କୋଉଠି ?" ତାଙ୍କ ଘର ତୁମେ ଜାଣିଥିବ- ତୁମରି ଗାଁ ଆଡ଼େ। ନିମାପଡ଼ା ପାଖ ତୁଳସୀପୁର।" ତୁଳସୀପୁର ନାଁଟା ଶୁଣୁ ଶୁଣୁ ମୋ ଦେହରେ ଚାଉଁକିନା ଲାଗିଗଲା। ସେତେବେଳକୁ ବୋଧେ ମିଶେସ୍ ମିଶ୍ର ମୋର ପରିଚୟ ପାଇ ଯାଇଥାନ୍ତି କିମ୍ବା ମୋତେ ଚିହ୍ନି ପାରିଥାନ୍ତି। ଚା' କରି ଆଣୁଛି କହି ସେ ଘର ଭିତରକୁ ଚାଲିଗଲେ। ମହମବତୀ ଆଲୁଅରେ ଆଲୋକିତ, ଡାକ୍ତର ମିଶ୍ରଙ୍କ ବୈଠକଖାନାରେ ବସି ପୁରୁଣା ଦିନର ଇତିହାସ ପୃଷ୍ଠା ଓଲଟାଉଥିଲୁ। ପୁରୁଣା ଇତିହାସ ପୃଷ୍ଠା ଓଲଟାଇଲା ବେଳେ, ବନ ଭାଇନା ଘର ଗେଟ୍ ପାଖରେ ଠିଆ ହୋଇ ଚାହିଁଥିବା ସେଦିନର ଏଗାର ବର୍ଷର ବାସନ୍ତୀ ମୋ ଆଖି ଆଗରେ ନାଚି ଉଠୁଥିଲା। ଏଇ ସେଇ ବାସନ୍ତୀ ? ମୋ ମନରେ କେତେ ପ୍ରଶ୍ନ। କିଛି ସମୟ ପରେ ହାତରେ ଦି କପ୍ ଚା ଆଣି ବାସନ୍ତୀ ଡାକ୍ତର ମିଶ୍ରଙ୍କ ଆଗରେ ଗୋଟେ କପ୍ ଥୋଇ ଦେଇ ମୋ ଟେବୁଲ ଉପରେ ଥୋଇ ଦେଲା ବେଳେ ମହମବତୀର ସ୍ୱଚ୍ଛ ଆଲୁଅରେ ମୁଁ ଚାହିଁଥିଲି ତାଙ୍କ ମୁହଁ ଆଡ଼େ। ହଟାତ୍ ମୁଁ ଚମକି ଉଠିଲି। ବାସନ୍ତୀ ଆଖିରେ ଲୁହ, ଦି ଧାର ଲୁହ, ଦୁଇ ଆଖି କୋଣରୁ ଗଡ଼ି ଆସୁଛି। ଚା କପ୍ ଥୋଇ ଦେଇ ଡକ୍ଟର ମିଶ୍ରଙ୍କ ଅଜାଣତରେ ପଣତ କାନିରେ ଲୁହ ପୋଛି, ସେ ଘର ଭିତରକୁ ଚାଲିଗଲେ। ଏଥି ମଧ୍ୟରେ ଡକ୍ଟର ମିଶ୍ର ମୋ ପାଇଁ କେତେଗୁଡ଼ିଏ ହାଲୋସିନ୍ ଟାବଲେଟ୍ ଖଣ୍ଡେ କାଗଜରେ ଗୁଡ଼ାଇ ମୋ ହାତକୁ ବଢ଼ାଇ ଦେଲେ। ମୁଁ ଆଉ କିଛି ନ କହି – ସେ ଅନ୍ଧକାରରେ ତାଙ୍କ ଘରୁ ବାହାରି ଆସିଥିଲି।

—୦୦୦—

ପଶୁପତି, ଏଇ ପାଞ୍ଚବର୍ଷ ତଳେ ସମୁଦ୍ରକୁ ଡଙ୍ଗା ନେଇ ଯାଇଥିଲା, ଅନ୍ୟମାନଙ୍କ ସାଙ୍ଗରେ ବାଗ୍‌ଦା ଚିଙ୍ଗୁଡ଼ି ଧରିବା ପାଇଁ। କ'ଣ ହେଲା କେଜାଣି ସେଇ ଡଙ୍ଗା ଉପରେ ତା'ର ପ୍ରାଣବାୟୁ ଉଡ଼ିଗଲା। ସାଙ୍ଗସାଥିମାନେ ତା'ର ମଲାଦେହକୁ ଧରି ଗାଁକୁ ଫେରିଲେ। ଏବେ ତ ବାଗ୍‌ଦା ଚିଙ୍ଗୁଡ଼ି ସୁନାଠାରୁ ଅଧିକ ଦାମ୍। କେଜିଏ ଚିଙ୍ଗୁଡ଼ି ହେଲେ ଦିନକର ଖର୍ଚ୍ଚ ଚଳିଯାଏ। ମୁହାଣରୁ ଚିଙ୍ଗୁଡ଼ି ଯାଆଁଳ, ଚିଙ୍ଗୁଡ଼ି ଧରି ସେମାନେ ପାରାଦ୍ୱୀପରେ ଚିଙ୍ଗୁଡ଼ି କମ୍ପାନୀକୁ ବିକ୍ରି କରିଥାନ୍ତି। ଏଇ କମ୍ପାନୀମାନେ ଆଗତୁରା ମାଛ ବଇନା ଦିଅନ୍ତି। ବାଗ୍‌ଦା ଚିଙ୍ଗୁଡ଼ି ଦାମ୍ ବଢ଼ିଲା ଦିନଠାରୁ ସେମାନଙ୍କର ଆର୍ଥିକ ଅବସ୍ଥା ବଦଳି ଯାଇଛି। ଯେଉଁମାନେ ଗାଁରେ ଝାଟିମାଟିରେ ଘର କରି ରହୁଥିଲେ, ଏବେ ସେମାନେ ଇଟାରେ କାନ୍ଥ କଲେଣି। ଜଣେ ଅଧେ ଚାଳ ପରିବର୍ତ୍ତେ ଟିଣ ଘର କଲେଣି, କିନ୍ତୁ ଚିଙ୍ଗୁଡ଼ିରୁ ଯେତେ ପଇସା ପାଉଛନ୍ତି ତା'ର ଅଧା ପଇସା ମଦପାଣିରେ ଉଡ଼ି ଯାଉଛି। ପଶୁପତି, ମାଛ ଧରେ, ସନ୍ଧ୍ୟାବେଳକୁ ମଦ ନ ପିଇଲେ ପେଲି ହୁଏ। ବର୍ଷକ ପରେ ସ୍ତ୍ରୀ ବି ତା'ର ବାଟ ଧରି ଚାଲିଯାଇଥିଲା। ଘରେ ରହିଗଲେ ରଘୁ ଓ ମୋନା।

—ଭଙ୍ଗା ବାଉଁଶ



୧୯୪୦ ମସିହାରେ ଜନ୍ମଗ୍ରହଣ କରିଥିବା ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବଟକୃଷ୍ଣ ତ୍ରିପାଠୀ ଜଣେ ଅବସରପ୍ରାପ୍ତ ପୋଲିସ୍ ପ୍ରଶାସକ। ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ୍ କରି ଶ୍ରୀ ତ୍ରିପାଠୀ ଓଡ଼ିଶା ପ୍ରଶାସନିକ ସେବା ପରେ ପୋଲିସ୍ ସେବାରେ ଯୋଗ ଦେଇଥିଲେ। ସେ ଭୁବନେଶ୍ୱର, ପୁରୀ, କଟକ, ରାଉରକେଲା ଆଦି ଅଂଚଳରେ ଏସ୍.ପି. ଭାବେ କାର୍ଯ୍ୟ କରିଛନ୍ତି। ଏହାଛଡ଼ା କେନ୍ଦ୍ରାଞ୍ଚଳ ଡିଆଇଜି, ଦିଲ୍ଲୀସ୍ଥିତ କେନ୍ଦ୍ର ସରକାରଙ୍କ ଦୁର୍ନୀତି ନିବାରଣ ନିର୍ଦ୍ଦେଶକ, ରାଜ୍ୟ ଚଳଚ୍ଚିତ୍ର ନିଗମର ପରିଚାଳନା ନିର୍ଦ୍ଦେଶକ, କଳିଙ୍ଗ ଷ୍ଟୁଡ଼ିଓ ଅଧ୍ୟକ୍ଷ, ରାଜ୍ୟ ପୋଲିସ୍ ଗୁଇନ୍ଦା ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଏବଂ ରାଜ୍ୟ ପୋଲିସ୍ ମାନବାଧିକାର ସଂସ୍ଥାର ଆଇ.ଜି. ଭାବେ କାର୍ଯ୍ୟ କରିଛନ୍ତି। କୃତିତ୍ୱପୂର୍ଣ୍ଣ ପୋଲିସ୍ ସେବା ଲାଗି ସେ ରାଷ୍ଟ୍ରପତିଙ୍କ ଠାରୁ ବିଶିଷ୍ଟ ସେବା ପଦକ ପାଇଛନ୍ତି। ସମ୍ପ୍ରତି ଦୈନିକ ସମ୍ବାଦପତ୍ର 'ଦିନଲିପି'ର ମୁଖ୍ୟ ସମ୍ପାଦକ ଭାବେ କାର୍ଯ୍ୟ କରୁଥିବା ଶ୍ରୀ ତ୍ରିପାଠୀ ଜଣେ ସୁସାହିତ୍ୟିକ, ଉଚ୍ଚକୋଟୀର ଅଭିନେତା ଏବଂ ଜଣେ ଦକ୍ଷ ସଂଗଠକ। ସେ ଅନେକ ଚଳଚ୍ଚିତ୍ର, ନାଟକ, ଦୂରଦର୍ଶନ ଧାରାବାହିକରେ ଅଭିନୟ କରିଛନ୍ତି। ଚଳଚ୍ଚିତ୍ର କାହାଣୀ ଲେଖି ଖୁବ୍ ଚର୍ଚ୍ଚାରେ ରହିଛନ୍ତି। ବିଭିନ୍ନ କ୍ଷେତ୍ରରେ ଅବଦାନ ପାଇଁ ଶ୍ରୀ ତ୍ରିପାଠୀଙ୍କୁ ବହୁ ସାହିତ୍ୟ, ସଂସ୍କୃତି ଏବଂ ସେବା ଅନୁଷ୍ଠାନ ସମ୍ମାନିତ କରିଛନ୍ତି।

ଶ୍ରୀ ତ୍ରିପାଠୀଙ୍କ ସାହିତ୍ୟ ବାସ୍ତବତାକୁ ଆଧାର କରି ଗଢ଼ି ଉଠିଛି। ତାଙ୍କ ରଚିତ ପୁସ୍ତକ ପଢ଼ିଲେ ପାଠକଟିଏ ବାସ୍ତବତା ଭିତରେ ହଜିଯିବାକୁ ବାଧ୍ୟ ହୁଏ। ସେ ଏ ପର୍ଯ୍ୟନ୍ତ ଅନେକ କାହାଣୀ, ଉପନ୍ୟାସ ଆଦି ରଚନା କରିସାରିଛନ୍ତି। ତାଙ୍କର ପ୍ରତ୍ୟେକଟି ରଚନା ସ୍ୱତନ୍ତ୍ର ତଥା କାଳଜୟୀ ହେବାକୁ ଅପେକ୍ଷା ରଖେ। "ସ୍ମୃତିରେ ମହାବାତ୍ୟା" ତାଙ୍କର ଆଉ ଏକ ଅଙ୍ଗେନିଭା ଅନୁଭୂତିର ବାସ୍ତବ ଚିତ୍ର। ସ୍ମୃତିରେ ମହାବାତ୍ୟା ସଂକଳନଟି ପରିବର୍ଦ୍ଧିତ ହୋଇ ପୁନଃମୁଦ୍ରଣ ବୁକ୍ସ ହବ୍ ପକ୍ଷରୁ କରାଯାଇଛି।

-ପ୍ରକାଶକ

BOOKS HUB